# ନିଜର ଭାବିଲା ପରେ



ଡ଼ଃ ସଂଘମିତ୍ରା ମିଶ୍ର

ପ୍ରକାଶକ
ଅପରାଜିତା ପ୍ରକାଶନୀ
ଭୁବନେଶ୍ୱର - ୭

# ନିଜର ଭାବିଲା ପରେ

(କବିତା ସଂକଳନ)


କବି — ଡକ୍ଟର ସଂଘମିତ୍ରା ମିଶ୍ର<br>
ମାର୍ଫତ୍ ଡାକ୍ତର ଜଗନ୍ନାଥ ମହାପାତ୍ର<br>
ବି-୩୫, ଶହୀଦ ନଗର<br>
ଭୁବନେଶ୍ୱର - ୭୫୧ ୦୦୭

ପ୍ରକାଶକ — ଅପରାଜିତା ପ୍ରକାଶନୀ<br>
ଭୁବନେଶ୍ୱର - ୭

ପରିବେଷକ — ଗ୍ରନ୍ଥାଳୟ,<br>
ମାର୍କେଟ୍ ବିଲ୍ଡିଂ, ଭୁବନେଶ୍ୱର - ୧

ପ୍ରକାଶ କାଳ — ନଭେମ୍ବର ୧୯୯୬

ସ୍ୱତ୍ୱ — ଅବିନାଶ ମହାପାତ୍ର

ପ୍ରଚ୍ଛଦ — ଅସୀମ ବସୁ

ମୁଦ୍ରଣ — ରିପ୍ରୋପ୍ରିଣ୍ଟ, ଭୁବନେଶ୍ୱର

ମୂଲ୍ୟ — ୫୦.୦୦


## NIJARA BHABILA PARE

(Poetry Collection)


Writer : DR. SANGHAMITRA MISHRA<br>
C/o Dr. Jagannatha Mohapatra<br>
B-35, Saheed Nagar<br>
Bhubaneswar - 751 007

Publisher APARIJATA PRAKASHANI<br>
Bhubaneswar - 7

Distributor GRANTHALAYA,<br>
Market Building, Bhubaneswar - 1

First Edition : NOVEMBER 1996

Copy Right : ABINASH MOHAPATRA

Cover Desin: ASIM BOSE

Printer REPROPRINT, Bhubaneswar

Price 50/-

# ଉତ୍ସର୍ଗ

ବୋଉ,

ନିଜର ଭାବିଲା ପରେ ହିଁ ତ ସବୁ
କଷ୍ଟର ଆରମ୍ଭ ଆଉ ଶେଷ । "କେହି
ଏଠି କାହାର ନୁହଁନ୍ତି" ଏ ଗୈରିକ
ଜୀବନଦର୍ଶନ ବୁଝି ମଧ ସଭିଙ୍କୁ
ନିଜର ଭାବିବା ଆଉ ଭିତରେ
ଭିତରେ କ୍ଷତାକ୍ତ ହେବା ତ ତୋତେ
ଦେଖି ଦେଖି ଶିଖିଛି । ଆଜି ଏ
କବିତା ବହି "ନିଜର ଭାବିଲା
ପରେ" ତୋରି ପବିତ୍ର ସ୍ମୃତି
ଉଦ୍ଦେଶ୍ୟରେ ନିବେଦନ କରି ତୋ
ଆଶିଷ ଭିକ୍ଷା କରୁଛି ।

ମିତୁ

# ଅଗ୍ରଲେଖ

କବିତା ବହିଟିର ମୁଖବନ୍ଧ ଲେଖିବା ଏମିତି କିଛି ଜରୁରୀ ନୁହେଁ । କବିତା ଚିହ୍ନିଲା ଲୋକେ ଠିକ୍ ଚିହ୍ନିବେ କବିତାକୁ, ମୁଖବନ୍ଧ ଥାଉ ନଥାଉ । ତେବେ, ନିଜର ଭାବିଲା ପରେ ଅଧିକାରକୁ ସ୍ୱୀକାର କରିବାକୁ ହୁଏ, ସେଇଥିପାଇଁ ଯେ ଅଗ୍ରଲେଖ-କବି ଓ ପାଠକ ମଝିରେ ଠିଆ ହୋଇ କବିତାର ହାତ ଧରିବାର ଅଭିନୟ ।

ଏହି କବିତାଗୁଡ଼ିକ ହୃଦୟର ନିରୁତାରସରେ ଉତ୍ତୀର୍ଣ୍ଣ । ମଣିଷ ଓ ଈଶ୍ୱର ଉଭୟଙ୍କ ପ୍ରତି କବି ଉନ୍ମୁଖ, ଉଭୟଙ୍କ ପାଇଁ ବ୍ୟାକୁଳ, କଷ୍ଟ ସହୁଛନ୍ତି ଅଥଚ୍ କାହାଠାରୁ କିଛି ଯେ ମିଳିଯିବ, ଯେ ଆଶା ରଖିନାହାନ୍ତି । ସେତକ ପରିପକ୍ୱତା ଅନ୍ତତଃ ଅଛି ଯେ, ମଣିଷ ଆଉ ଈଶ୍ୱର ଉଭୟେ ନିଜନିଜ ବାଟରେ ଅସମର୍ଥ - କବିଙ୍କୁ ତାଙ୍କରି ଇପ୍‌ସିତ ଜୀବନଟିଏ ପ୍ରଦାନ କରିବା ପାଇଁ ।

ଯଦି କବି ଜଣେ ନାରୀ ହୋଇଥାଏ, ତେବେ ନାରୀତ୍ୱର ସକଳ ମହିମାରେ କବିତା ଶ୍ରୀମଣ୍ଡିତ ହେବା ସ୍ୱାଭାବିକ, ପୁରୁଷ କବିମାନେ ମଧ ନାରୀତ୍ୱର ମହିମା ପ୍ରଖ୍ୟାପନରେ କମ୍ ଧୁରନ୍ଧର ଓ ସର୍ଜନଶୀଳ ନୁହଁନ୍ତି । ତଥାପି ଏଇ କବିତାଗୁଡ଼ିକରେ ସଂଘମିତ୍ରା ବଂଚିବାର ଅନୁଭବକୁ ନିଷ୍ପଟ ଭାବେ ଉଚ୍ଚାରଣ କରିଛନ୍ତି । ନାରୀତ୍ୱର ଦୁଇଟି ଉଜ୍ଜ୍ୱଳ ଦିଗ ତାଙ୍କ କବିତାରେ ସ୍ପଷ୍ଟ ହୁଏ । ଗୋଟିଏ ବିଶ୍ୱ ନିମିତ୍ତ ଆନ୍ତରିକତା, ସହାନୁଭୂତି ଓ ସୁମନାସର ସ୍ୱର । ଅପରଟି ନାରୀ ଜୀବନର ବିବିଧ ବିଡ଼ମ୍ବନା ସହ ସାଲିସ୍‌ର ସ୍ୱର । ବିଡ଼ମ୍ବନାକୁ ପ୍ରତୀକିତ କରିବାକୁ ଯାଇ ସଂଘମିତ୍ରା ଗୋଟିଏ ସଚେତନ ନାରୀକୁ (ନିଜକୁ ମଧ) ବିଭିନ୍ନ ପ୍ରତୀକ ରୂପରେ ଚିହ୍ନିତ କରିଥାଆନ୍ତି, ସଂସାର ଓ ସମାଜ ନାରୀଠାରୁ ତ୍ୟାଗ ଚାହେଁ ମାତ୍ର ତାକୁ ଯଥାର୍ଥ ସମ୍ମାନ ଦେବାକୁ କୁଣ୍ଠିତ ହୋଇଥାଏ । ସେଥିପାଇଁ କାବ୍ୟ ନାୟିକାର କ୍ଷୋଭ ଓ ବିଦ୍ରୋହ ନାହିଁ, ହୁଏତ ଅଛି ବ୍ୟଥା, ମାତ୍ର ସେ ବ୍ୟଥା ସହ ସାଲିସ୍ କରି ନେବାକୁ ସେ ନିଜକୁ ପ୍ରସ୍ତୁତ କରୁଛି । କେବେ 'କୂଅରେ ପଡ଼ିଥିବା ବେଙ୍ଗ', କେବେ 'ପାହାଚ ତଳର ଘାସ' ତ କେବେ 'ଅସହାୟ କୁଟାଖିଏ ଆଜି ଆସି

ଲାଖିଛି ଏଇଠି', 'ମନ୍ଦିର ବେଢ଼ାର ମୁଁ ତ ପ୍ରାଣହୀନ ନିର୍ଜୀବ ପଥର' ମଧ୍ୟରେ ନାରୀସତ୍ତାକୁ ପ୍ରତୀକିତ କରିଛନ୍ତି । ଭାରତୀୟ ପରମ୍ପରା ସମର୍ଥିତ ନାରୀଟିଏ - ସବୁକିଛି ସହ୍ୟ କରିଯିବାକୁ ପ୍ରସ୍ତୁତ ହୁଏ, ପୁଣି ସେ ଆଧୁନିକା, ଶିକ୍ଷିତା ଓ ସଚେତନ ମନୋଭାବ ସମ୍ପନ୍ନା । ତେଣୁ ନିଜ ସତ୍ତା ସମ୍ପର୍କରେ ଥାଏ ସଚ୍ଚାଗ ଏବଂ ସହିନେବାର ଅନିବାର୍ଯ୍ୟ ବିଡ଼ମ୍ବନାକୁ ତୀବ୍ରଭାବେ ଭୋଗିଥାଏ । ତାର ବ୍ୟକ୍ତିତ୍ୱର ସ୍ୱାଧୀନ ପ୍ରକାଶ ଅନ୍ୟମାନଙ୍କର ସହ୍ୟ ହୁଏନା - ''ମୋ ତୁଣ୍ଡ ଖୋଲିଲେ ବୋମାଟିଏ ଫୁଟିଯିବ / ଉଜୁଡ଼ିଯିବ ମୋ'ସମ୍ଭାବ୍ୟ ପ୍ରଶ୍ନର ଉତ୍ତର'' (ପରୀକ୍ଷା) କିମ୍ବା ''କେନାଟିଏ ମନଇଛା ବଢ଼ିଗଲେ / ତୁମରି ଆଖିରେ ପଡ଼େ ସବାଆଗ କତୁରୀଟେ ଧରିତାକୁ ମନଇଛା କାଟି ଦେଉ ଥାଅ ।'' (ଘାସଟିଏ ପାହାଚ ତଳର) । କାବ୍ୟ ନାୟିକା ଜାଣେ ସେ ସର୍ବଂସହା ଭୂମିକାକୁ ଗ୍ରହଣ କରିଛି - ମାତ୍ର ସେ ବି ହେଇପାରେ ସଂହାରିକା - ମାତ୍ର ସୃଷ୍ଟିର କଲ୍ୟାଣ ପାଇଁ ହିଁ ସେ 'ସଂହାରିକା' ଠାରୁ 'ସର୍ବଂସହା' ହେବାକୁ ଆଗ୍ରହାୟିତା, ''ମୋ'ଭିତରେ ସେ ସୂର୍ଯ୍ୟର ଦାହିକା ଶକ୍ତି ଆଜି ମଧ୍ୟ ସୁପ୍ତ / ଆଜି ବି ଗୋଟେ ଅଟ୍ଟହାସରେ ମୁଁ ଭାଂଗିଦେଇ ପାରେ ମୁହୂର୍ତ୍ତକରେ / ତୁମର ଯୁଗଯୁଗର ସଞ୍ଚିତ ଅଟ୍ଟାଳି ।'' (ସର୍ବଂସହା) ବଂଚିବା ପାଇଁ ଜୀବନର ବିଡ଼ମ୍ବନା ସହ ସାଲିସ କରିବାକୁ ପ୍ରାଣାନ୍ତକ ଉଦ୍ୟମ କରୁଥିବା ସତ୍ତ୍ୱେ କାବ୍ୟନାୟିକା ଜାଣେ ଯେ ଯେଉଁ ଘର ସଂସାର ନିଜର ବୋଲି ଏତେ ତ୍ୟାଗ ଦାବୀ କରେ, ସେଠାରେ ପ୍ରକୃତରେ ତାର ନିଜର ବୋଲି କିଛି ନାହିଁ - ବଡ଼ ହାସ୍ୟକର ତାର ଅଧିକାର – ''କୁଟାଖିଏ ମୋର ନୁହେଁ ଜାଣୁ ଜାଣୁ / x x x କାନ୍ଥରେ ଝୋଟି ଲେଖୁଥିବି x x x ପିଲାଏ କରିବେ ପର x x x ଚାଳରେ ବସାଇ ଦେବିନି କୁଆ ।'' (ଘର) । ପୁଣି ଏହି ଅସହାୟ ନାରୀତ୍ୱର ଅବଲମ୍ବନଟି ମଧ୍ୟ କମ୍ ଅସହାୟ ନୁହେଁ । କାରଣ ଏଠାରେ ଅବଲମ୍ବନ ହେଉଛି ନିଜର କନ୍ୟା - ସେ ବି ନାରୀଜୀବନର ଏଇ ଝାମୁନାଚ଼ରେ ଦିନେ ପ୍ରଚଣ୍ଡାନଳରେ ପଥ ଚାଲିବାକୁ ବାଧ୍ୟ ହେବ । ତେଣୁ କବି କହନ୍ତି - ''ତୁ କେବେ ଲାଗୁ ମୋତେ ଆଶାର ସୁବର୍ଣ୍ଣତରୀ / କେବେ ଲାଗୁ ଗଛଛିଣ୍ଡା ସୁଅ ମୁହଁ କଅଁଳ ପତର'' (ତୋ ଲାଗି କବିତାଟିଏ) ।

ନାରୀ ଜୀବନର ତ୍ୟାଗ, ଶପଥ, ବାତ୍ସଲ୍ୟ ଓ ମର୍ଯ୍ୟାଦାବୋଧର ଚିତ୍ରନେଇ କବିତାଗୁଡ଼ିକ ପ୍ରାଣକୁ ଛୁଏଁ । କବିତାର ରାଜ୍ୟ ଭିତରେ ଗୋଟିଏ ମନନଶୀଳା, ସହନଶୀଳ, ବ୍ୟାକୁଳ ହୃଦୟା ନାରୀକୁ ଧରିନେବାକୁ, ବୁଝିନେବାକୁ, ଆଲିଙ୍ଗିବାକୁ କଷ୍ଟ ହୁଏ ନାହିଁ । ତା'ପ୍ରତି ଶ୍ରଦ୍ଧା ଓ ସହାନୁଭୂତି ଉତ୍ସାରିତ ହୁଏ ଓ ଅନ୍ୟ ଅର୍ଥରେ ତାକୁ ନିଜର ଭାବି ହୁଏ ।

ଏହି କବିତାଗୁଡ଼ିକରେ ସଂପଦ ହେଉଛି ମାନବ ଜଗତ ପାଇଁ ସୁମନାସର ସ୍ୱର । କବିତାର ଯଦି କିଛି ନିର୍ଦ୍ଦିଷ୍ଟ ଲକ୍ଷ୍ୟ ଥିବା ଉଚିତ୍‌, ତେବେ ସେହି ଲକ୍ଷ୍ୟ ମାନବ ପାଇଁ ଅଜସ୍ର ସହାନୁଭୂତି ଓ ସୁମନାସ - ଜଡ଼ିତ ହେବା ଭିନ୍ନ ଅନ୍ୟ କିଛି ହୋଇ ନପାରେ । ଏହି ଦୃଷ୍ଟିରୁ କବିତା ଗୁଡ଼ିକରେ ମାନବିକ ସମ୍ପର୍କର ଶୁଦ୍ଧତା ଓ ଆନ୍ତରିକତା ପ୍ରକଟିତ । ପୁଣି ମଣିଷ ମଣିଷ ଭିତରେ ସୌହାର୍ଦ୍ଧ୍ୟ ପ୍ରତିଷ୍ଠା ପାଇଁ କବି ଅଖଣ୍ଡ ଆଶାପୋଷଣ କରିଥାଆନ୍ତି । ମଣିଷ ଓ ଈଶ୍ୱରଙ୍କ ଭିତରେ ଏକ ରହସ୍ୟମୟ ଯୋଗାଯୋଗର ଅବସ୍ଥିତି ନେଇ କବି ଆଶାପ୍ରକଟ କରନ୍ତି – ''ବିଶ୍ୱାସରେ ଭରିଯାଉ ଏ ଧରଣୀ / ତୁମଠାରୁ ମୋ ଯାଏଁ / ଲମ୍ବି ଆସୁ ସମ୍ପର୍କର ପାଟ ସୂତାଖିଏ (ଇଚ୍ଛାମୟ) କିମ୍ବା ''ମୁଁ କ'ଣ ଆଜିଯାଏଁ ଦେଖୁଛି କି ଦୀର୍ଘତମ ଅସରା ସପନ / ମଣିଷର ସ୍ନେହ ଶ୍ରଦ୍ଧା ମୋ'ପାଇଁ କି / ଚିରଦିନ ନିଅଣ୍ଟିଆ'' (ସ୍ୱପ୍ନାହତ), ଅନୁରୂପ ଭାବେ ''ତୁମ ପାଇଁ ମୋ ଛୋଟିଆ ବୁକୁ ତଳେ / ରଖିଛି ମୁଁ ଆନ୍ତରିକତାରେ ଭିଜା / କେଇ ଇଞ୍ଚ ଥାନ ।'' (ଅଶ୍ରୁନୈବେଦ୍ୟ)

ତଥାପି ସଂସାରରେ ସ୍ୱାର୍ଥସର୍ବସ୍ୱ ମଣିଷର ଅଭିସନ୍ଧିମୂଳକ ଦିଆନିଆର ଭାବ କବିଙ୍କୁ ବ୍ୟଥିତ କରେ - ନିରୁତା ମନଟିଏ ସେ ଚାହାଁନ୍ତି - ନିରୁତା ଭାବଟିଏ ବଢ଼ାଇ ଦେବାକୁ ସେ ପ୍ରସ୍ତୁତ - ମାତ୍ର ଏଠାରେ ନିରୁତା ଭାବର ଦିଆନିଆ ଚଳେ ନାହିଁ ସେ ଆପଣାକୁ ସାଲିସ୍‌ର ସ୍ୱରରେ ବୁଝାନ୍ତି - ''ନିରୁତା ମନର ମୂଲ୍ୟ କିଏ ଦେବ / ଆଜିର ଏ ହିସାବୀ ସଂସାରେ'' । (ଉଜ୍ଜଳ ପୁରୁଷ)

ସଂଘମିତ୍ରାଙ୍କର ଏଇଟି ଦ୍ୱିତୀୟ କବିତା ସଂକଳନ । ଜଣେ ଅଧ୍ୟାପିକା, ଗବେଷିକା ଭାବରେ ତାଙ୍କର କୃତିତ୍ୱ ପ୍ରଚୁର । ସେ ମଧ କିଛି ସଫଳ ଏକାଙ୍କିକା ଓ ରମ୍ୟରଚନା ସୃଷ୍ଟି କରିଛନ୍ତି । ତଥାପି ଏ ସବୁ ଭିତରେ କବିତାରେ ହିଁ ସେ ନିଜ ଅନ୍ତର୍ଜୀବନର ଯନ୍ତ୍ରଣା, ଆନନ୍ଦ, ପ୍ରାପ୍ତି ଓ ଅପ୍ରାପ୍ତିକୁ ଖୋଜିଛନ୍ତି । ସେଇଥିପାଇଁ କବିତାଗୁଡ଼ିକ ହୋଇ ଉଠିଛନ୍ତି ଅନୁଭବସିଦ୍ଧ, ଭାବମୟ, ବିବିଧଚାତୁରୀରୁ ମୁକ୍ତ । ଏଥିରେ ପାଠକମାନେ ଅବଶ୍ୟ ଏକ ପରଂପରା ସିଦ୍ଧ, ଅଥଚ୍‌ ସଚେତନ ସ୍ନେହସଜଳ ନାରୀତ୍ୱର ଉଷ୍ମତାକୁ ଅନୁଭବ କରିବେ, ତେଣୁ କବିତାମାନଙ୍କୁ ଆପଣାର ମନେ କରିବେ ।

ପ୍ରତିଭା ଶତପଥୀ

# ମୋ କଥା, କବିତାର କଥା......

ନିଜର ଭାବିଲା ପରେ ହିଁ ସବୁ ବାଟ ସଳଖ ମନେହୁଏ । ଗୋଡ଼ରେ କଣ୍ଟା ଫୁଟିବା ବେଳେ ବି କେଉଁ ବଇଁଶୀର ସ୍ୱର ଶୁଣି ଅନ୍ୟମନସ୍କ ହେଉଥିବା ମଣିଷ ପାଶୋରି ଦିଏ ରକ୍ତ ଝରିବାର ଯନ୍ତ୍ରଣା । ସେହି ଆପଣାପଣରୁ ସୃଷ୍ଟି ମୋର ପ୍ରଥମ କବିତା ସଂକଳନ 'ମମତାର ଉପପାଦ୍ୟ'କୁ ପ୍ରାୟ କୋଡ଼ିଏ ବର୍ଷ ତଳେ ଆପଣମାନେ ଭେଟିଥିଲେ । ଜୀବିକାର ଗତାନୁଗତିକତା ଭିତରେ ଜୀବନର ଅବସାଦ, ଅବଶୋଷ ଓ ଅକୁହାନପଣକୁ ନେଇ ଧନ୍ଦି ହେଉଥିବା ମଣିଷଟିଏ ମୁଁ - କେଉଁ ମୁହୂର୍ତ୍ତରେ ମନେହୁଏ ଆକାଶ ଓହ୍ଲେଇ ଆସୁଛି ମଥା ଉପରକୁ ଆଶୀର୍ବାଦର ମୁଦ୍ରାରେ । ପରକ୍ଷଣରେ ଭାବେ ମୁଁ ଏକ ଛାତ ନଥିବା ଘରେ ବଂଚିଛି ଆଜିଯାଏଁ, ଆଉ ମୋର ବୋଲି ଆବୋରିଥିବା ସେଇ କେତେ ଆଙ୍ଗୁଳି ଥାନ ବି ମୋର ନୁହେଁ । ସବୁ ପୂର୍ବ ନିର୍ଦ୍ଦିଷ୍ଟ । ମୁଁ ବିସ୍ତୃତି ଆଉ ବିସ୍ମୃତି ମଧ୍ୟବର୍ତ୍ତୀ ଏକ ସଉାଟିଏ ମାତ୍ର, ଯେ ଗୋଟିଏ ପାଦ ରଖିଛି ନିତି ଧସି ଯାଉଥିବା ପୈତୃକ ପୃଥିବୀ ଉପରେ ଆଉ ଗୋଟିଏ ପାଦ ଉଠାଇଛି । ଜାଣେନି ତାହା ପଙ୍କରେ ପଡ଼ିବ ନାଁ ଫୁଲ ପାଖୁଡ଼ା ବିଛା ଉଦ୍ୟାନରେ ପଡ଼ିବ । ଜାଣେନି ମୋ ପରିବେଶର ନିୟତ ଅସନ୍ତୋଷ ମୋତେ କଲମ ଧରାଇଛି ନାଁ କଲମ ପ୍ରତିମୋର ଆଗ୍ରହ ମୋତେ ମୋ'ପରିବେଶ ପାଇଁ ଅନୁପଯୋଗୀ କରିଦେଉଛି । ତେବେ, ନିଜର ଭାବିଲେ ହିଁ ତ ବନ୍ଦୀଶାଳାର ସବୁ ବେଡ଼ି ଫିଟିଯାଏ । ନିରନ୍ଧ୍ର ଅନ୍ଧାରରେ ଆଲୁଅଧାରେ ଦିଶେ ଯେଉଁ ଆଲୁଅ ବାଟ ବଢ଼ାଇ ନିଏ ବନ୍ଦୀଶାଳାରୁ ନନ୍ଦ ମନ୍ଦିରକୁ, ବାଟରେ ଉଜାଣି ଯମୁନା ପଡ଼ିଲେ ବି ମନ୍ଦ କ'ଣ ? ଯାହା ମଥାରେ ଯୁଗାବତାରର ଅଭୟ ତାର ଅବା କେଉଁ ବନ୍ୟାବାତ୍ୟାକୁ ଡ଼ର ଯେ ?

ମୁଁ କିଛି ପ୍ରବନ୍ଧ ଲେଖିଛି, କିଛି ଫିଚର ଆଉ ଗପ ବି ଲେଖିଛି । ତେବେ କବିତାର ଦର୍ପଣରେ ହିଁ ମୋର ଓ ମୋ ସମୟର ବିଶ୍ୱସ୍ତ ଚେହେରା ଦେଖିପାରେ । କବିତା ପଢ଼ିବାକୁ ଭଲପାଏ । ଗୋଟିଏ କଥାରେ କହିଲେ କବିତା ମୋର ପ୍ରଥମ ଓ ପରମ ଆତ୍ମୀୟ ଯାହା ଭିତରେ ଗୁରୁଜନର ଆଶୀର୍ବାଦ, ବନ୍ଧୁର ପ୍ରେରଣା, ସନ୍ତାନର ନିର୍ଭରଶୀଳତା ମୋତେ ଏକାବେଳେ ମିଳିଯାଏ ।

ମୋତେ ଆପଣାପଣରେ ଦ୍ରୁତୁବୁତୁ କରି ଧନ୍ୟା କରିଥିବା ବିଶିଷ୍ଟ କବି ଡ଼ଃ ପ୍ରତିଭା ଶତପଥୀ ଏ ପୁସ୍ତକର ଭୂମିକାଟିଏ ଅତି ଆଗ୍ରହରେ ଲେଖି ଦେଇଛନ୍ତି । ତାଙ୍କୁ ମୁଁ ମୋର ଶ୍ରଦ୍ଧା ଓ ସମ୍ମାନ ନିବେଦନ କରୁଛି । ଆମ ସମୟର ବିଶିଷ୍ଟ ଶିଳ୍ପୀ କଥାକାର ଶ୍ରୀଯୁକ୍ତ ଅସୀମ ବସୁ ଅସୀମ ଆଗ୍ରହ ନେଇ ଏହାର ପ୍ରଚ୍ଛଦ ଅଙ୍କନ କରିଛନ୍ତି । ତାଙ୍କୁ କୃତଜ୍ଞତା ଜଣାଇବାକୁ ମୋର ଭାଷା ନାହିଁ । ତାଙ୍କ ନିକଟରେ ମୁଁ ଚିରଦିନ ମମତାବଦ୍ଧ । ମୋର ପରିବାର ହିଁ ମୋ'ପାଇଁ ପ୍ରେରଣାର ଉତ୍ସ । ମୋର କବିତା ସହିତ ଅଂତରଙ୍ଗତାକୁ ଉଦାର ଚିତ୍ତରେ ଗ୍ରହଣ କରିଥିବା ମୋର ସ୍ୱାମୀ ଡ଼ାକ୍ତର ଜଗନ୍ନାଥ ମହାପାତ୍ର, ମୋର ଆଦରଣୀୟା କନ୍ୟା ଅପରାଜିତା ଓ ପୁତ୍ର ଅବିନାଶଙ୍କୁ ମୁଁ ଏ ଅବସରରେ ଅନ୍ତରର ଶୁଭକାମନା ଜଣାଉଛି ।

ମୋର ଦିଗ୍‌ଦ୍ରଷ୍ଟା ଗୁରୁ ପ୍ରଫେସର କୃଷ୍ଣଚରଣ ସାହୁ, ଅନ୍ୟତମ ଗୁରୁ ପ୍ରଫେସର ରାଜେନ୍ଦ୍ର ପ୍ରସାଦ ଦାସ, ପୂଜନୀୟା ଡ଼ଃ ସ୍ନେହଲତା ପଟ୍ଟନାୟକ, ବାନ୍ଧବୀ ଡ଼ଃ ବିଜୟଲକ୍ଷ୍ମୀ ସ୍ୱାଇଁ, ଆଦରଣୀୟ ଡ଼ଃ ନାରାୟଣ ସାହୁ ତଥା ମୋର ଶ୍ରଦ୍ଧେୟ ଛାତ୍ରଛାତ୍ରୀମାନଙ୍କୁ ମୁଁ ଏ ଅବସରରେ ସ୍ମରଣ କରୁଛି । ଅନ୍ୟତମ ଆତ୍ମୀୟ ଡ଼ଃ ମିହିର କୁମାର ସାହୁ ଅଶେଷ ଶ୍ରମ ସ୍ୱୀକାର କରି ଏସବୁ କବିତା ଏକତ୍ରିତ କରିଛନ୍ତି ଓ ପୁସ୍ତକ ପ୍ରକାଶନର ଅନ୍ୟାନ୍ୟ ଅନୁସଂଗିକ କାର୍ଯ୍ୟ ସମ୍ପାଦନ କରିଛନ୍ତି । ମୁଁ ତାଙ୍କର ଉଜ୍ଜ୍ୱଳ ଭବିଷ୍ୟତ କାମନା କରୁଛି । ଏହାର ମୁଦ୍ରଣ କାର୍ଯ୍ୟ ରିପ୍ରୋପ୍ରିଣ୍ଟର କର୍ମକର୍ତ୍ତାଗଣ ଗ୍ରହଣ କରିଥିବାରୁ ମୁଁ ସେମାନଙ୍କୁ ଧନ୍ୟବାଦ ଦେଉଛି ।

ମୋର କବିତା ରଚନାର ପଥ ଶିଳା ବନ୍ଧୁର, କଣ୍ଟକାକୀର୍ଣ୍ଣ । ଅନେକ ପତନ ଅଭ୍ୟୁଦୟର କାହାଣୀ ତା'ଛାତିରେ ଲିପିବଦ୍ଧ । ତଥାପି କବିତା ଲେଖୁଛି । ଆପଣମାନଙ୍କ ଆଗ୍ରହ ଥିବା ଯାଏଁ ଆଉ ମୁଁ ଥକି ନପଡ଼ିବା ଯାଏଁ ଲେଖୁଥିବି । ଯେଉଁ ମହାନ୍ କଳାକାର ଏ ବିଶ୍ୱର ବିରାଟ ଚିତ୍ରପଟ ଅଂକନ କରିଛନ୍ତି ଓ ପ୍ରତି ମୁହୂର୍ତ୍ତରେ ତହିଁରେ ଇଚ୍ଛା ମୁତାବକ ରଂଗ ଭର୍ତ୍ତି କରୁଛନ୍ତି, ତାଙ୍କୁ ମୋର ଅନ୍ତରର ଭକ୍ତି ନିବେଦନ କରୁଛି । ତାଙ୍କ ଆଶୀର୍ବାଦ ଓ ଆପଣମାନଙ୍କ ଶୁଭେଚ୍ଛାକୁ ପାଥେୟ କରି ରହୁଛି ।

ସଂଘମିତ୍ରା ମିଶ୍ର

# — : ସୂଚୀ :—

# ଥରେ ନିଜର ଭାବିଲା ପରେ

ଥରେ ନିଜର ଭାବିଦେଲା ପରେ
ଆଉ କ'ଣ ଥାଏ ?
ସବୁଗଣ୍ଠି ଫିଟିଯାଏ ଆପେ ଆପେ
ସବୁ ଅଭିଯୋଗର ଚିତ୍କାର ଥମିଯାଏ
ସରିଯାଏ ଯୁକ୍ତିତର୍କ ସମସ୍ୟାର
ଯେତେ ଉଦ୍‌ବିଗ୍ନତା
ଥରେ ନିଜର ମଣିଲେ ବଙ୍କା ଟେଢ଼ା ରାସ୍ତାସବୁ
ରାଜପଥ ପାଲଟନ୍ତି
ଆକ୍‌ତା ମାକ୍‌ତା ହୋଇ ସାଉଁଟିଥିବା
ଗେଣ୍ଡା ଶାମୁକାରୁବି
ମିଳିଯାଏ ବେଳେ ବେଳେ ମହାର୍ଘ ମୁକ୍ତା ।
ସବୁ ଅବଶୋଷ, କ୍ଷତି
ତ୍ୟାଗରେ ବଦଳିଯାଏ

ମିଳିଯାଏ ହଜିଥିବା ଚାବିକାଠି
ଭଙ୍ଗା କୁଅ ଚାନ୍ଦିନୀ ଫାଙ୍କରୁ ।
ହଜିଯାଏ ଲାଭକ୍ଷତି ହିସାବର ଫର୍ଦ୍ଦ
କେମିତି କେଜାଣି ଅବା ଶ୍ୱେତବର୍ଣ୍ଣ କମଳଟେ
ଫୁଟିଦିଶେ ଛାତିଏ ପଙ୍କରୁ ।
ମୁଁ ତ ନିଜର ଭାବିଛି ବୋଲି, ନିରବ ହୋଇଯାଇଛି
ମୁଣ୍ଡ ଟୁଙ୍ଗାରୁଛି ଖାଲି ଶୁଣି ତମ ନିୟମ କାନୁନ
ସବୁ ବୁଝିବା ପରେ ବି ନବୁଝିବା ଛଳନା କରୁଛି
ଆଉ ତୁମ ଅହଂକାର ଦୀପ ଶିଖାଟିକୁ
ଚିରଦିନ ପଣତେ ଢ଼ାଙ୍କିଛି ।
ତୁମେଥରେ ସେଇମିତି ଭାବିପାରନ୍ତିନି
ଦେଖନ୍ତ ମୋ'ମୁହଁ ସବୁଠାରୁ ସୁନ୍ଦର ଦିଶନ୍ତା
ସବୁ ଖାଲ ଖମା ଭରି ହୋଇଯାନ୍ତା
ଜୀବନର ପ୍ରାଚୁର୍ଯ୍ୟରେ
ସବୁ ବେଡ଼ି ଫିଟିଯାନ୍ତା ବନ୍ଦୀଶାଳାର
କୋଉ କାଳୁ ରଙ୍ଗଛଡ଼ା ସଂସାରରେ
ଗୋଟେ ଆତ୍ମୀୟତା ରଙ୍ଗ ମାଖି ହୋଇଯା'ନ୍ତା ।

◆ ◆

# ତୁମେ ମୋତେ କ୍ଷମା କରିଦିଅ

ତୁମେ ମୋତେ କ୍ଷମା କର :
ମୋ ବିଶ୍ୱାସର ବୋଧିଦ୍ରୁମ
ଡ଼ାଳ ସବୁ ଅବେଳରେ ପତ୍ରଝଡ଼ା ଦିଏ
ଶେଥା ହୁଏ ସବୁଜ କୋମଳ ମନ
ବାରମ୍ବାର ବାଜି ହାରୁଥିବା ସେହି ମଣିଷର
ନିଜ ଉପରେ ଆଉ ବା କିବା ଆସ୍ଥା ଥାଏ ?
ତୁମେ ମୋତେ କ୍ଷମା କର
ବେଳେ ବେଳେ ମୁଁ ଜାବୁଡ଼ି ଧରେ ପ୍ରାଣପଣେ
ଅହଂକାର ଟିକକ ମୋର
ରକ୍ତର ସମ୍ପର୍କ ଯୋଡ଼େ ତୁମ ସାଥେ
ଯଶୋଦାର ସରଳତା ନେଇ,
ଯିଏ ଦିନେ ଭାବିଥିଲା
ଧାଇଁ ଯାଏ ମଥୁରାକୁ ତୁମକୁ ସେ ଆଣନ୍ତା କାଖେଇ ।

ତୁମେ ମୋତେ କ୍ଷମା କର : ତୁମର ବିଭୂତି ଦେଖି ମୁଗ୍ଧ ମୁହିଁ
ଭୁଲିଯାଏ ଅନ୍ତରାଳେ ଡ଼ୋରି ଧରିଥିବା ତୁମ କୁଶଳୀ ହାତଟି
ସମ୍ପୂର୍ଣ୍ଣ ଛାଡ଼ି ପାରେନି ଆପଣା ଉପରୁ ଆସ୍ଥା
ପାଣ୍ଡବ ଘରଣୀ ପରି କୁରୁ ସଭାତଳେ ଧରେ
ଶାଢ଼ୀ କାନି ପ୍ରାଣପଣେ ଜାବୁଡ଼ି ସାଉଁଟି ।
ତୁମେ ମୋତେ କ୍ଷମାକର, କୂଳ ଆଉ ଅକୂଳର ମଝିରେ ମୁଁ
ବିସ୍ମୃତି ଆଉ ବିସ୍ମୃତିର ମଝିରେ ମୁଁ
ତର୍କ ଆଉ ବିଶ୍ୱାସର ମଝିରେ ମୁଁ
ଥରେ ମୋତେ କ୍ଷମା କରିଦିଅ :
ସବୁ ବୁଝି ଭୁଲିଯାଏ ଠିକ୍ ପରୀକ୍ଷା ବେଳେ
ପାଠ ଭୁଲିଯାଉଥିବା ଅବୋଧ କିଶୋର ଭଳି
ଘଡ଼ି ହାତରୁ ଛାଡ଼େ ଜୀବନର ଡ଼ୋରି
ଖୁବ୍ ବେଶି ନିରାଶ ପ୍ରହରେ
ପୁଣି ଭାବେ ନିଜେ ନିଜ ନିୟାମକ
ଠିକ୍ ତାରି ପର ମୁହୂର୍ତ୍ତରେ
ଥରେ ହେଲେ ମୋର ସବୁ ସଂକୀର୍ଣ୍ଣତା ଅପସାରି
ମୋତେ ଏକ ବୃହତ୍ତର ବୃତ୍ତର ସନ୍ଧାନ ଦିଅ
ତୁମେ ମୋତେ କ୍ଷମା କରିଦିଅ ।

◆ ◆

# ଇଚ୍ଛାମୟ

ନଦୀନାମ ଇଚ୍ଛାମତୀ
ଋତୁ ନାମ ଇଚ୍ଛାମତୀ
ଇଚ୍ଛାମତୀ ତରୁଣୀ ବିଶେଷ
ସବୁ ଯଦି ଇଚ୍ଛାମୟ,
ତୁମେ ହୁଅ ମୋ ଇଚ୍ଛାର
ସର୍ବୋତ୍ତମ ପ୍ରତୀକ ପୁରୁଷ ।
ଇଚ୍ଛା ହେଲେ କୁଣ୍ଢାଇବି ବଡ଼ଦାଣ୍ଡେ
ଇଚ୍ଛା ହେଲେ ଦେଉଥିବି ଗାଳି
ଇଚ୍ଛାକରି ଧାଉଁଥିବି ସବୁଦୁଃଖ
ପଛରେ ପକାଇ
ଆବେଗରେ ମାରୁଥିବି ତାଳି ।
କହୁଥିବି ସାଙ୍ଗେସାଙ୍ଗେ ମହାବାହୁ
ବଳୀୟାର ଭୁଜ, ପୁଣି ଓଲଟିଯିବି ଦଣ୍ଡକଣ୍ଠିତରେ
ହାତୀମୁହାଁ ହାତଗୋଡ଼ ଖଣ୍ଡିଆ କହିବି
କଳାମୁଖ ନିନ୍ଦୁଥିବି
ଥିବ ଯଦି ଅଣସର ଘରେ ।
ତୁମେ ହିଁ ତ ଇଚ୍ଛାମୟ
ଆଜି କାହା ଇଚ୍ଛାକୁ ବି
ଦିଅ ତୁମେ ସମ୍ମାନ ଟିକିଏ
ତୁମପାଇଁ ମୋ'କାମନା 'ଆଶା'ରେ
ବଦଳିଯାଉ
ବିଶ୍ୱାସରେ ଭରିଯାଉ ଏ'ଧରଣୀ
ତୁମଠାରୁ ମୋ'ଯାଏଁ
ଲମ୍ବିଆସୁ ସମ୍ପର୍କର ପାଟସୁତାଖିଏ ।

◆ ◆

# ସଂକ୍ରମଣ

ନୀଳ ନିର୍ଜନ ଝାଉଁବଣର ଅସୁମାରୀ ସବୁଜିମା
ଦରିଆର ନିରୁକ୍ତ ନୀଳିମା
ଆଉ ଶ୍ରାବଣୀ ଆକାଶର ଅକୁହା ବେଦନା
ମୋ ମନରେ ଏକାକାର ହେଉଥିଲେ
ଝାଉଁବଣ ଝିଙ୍କାରୀ ସ୍ୱରରେ ମୁଁ ମୋ'ସଂବିତ୍ ଫେରିପାଇଲି
ସତେ କେଡ଼େ ବୋକୀଟା ମ ମୁଁ
ଏତେବେଳେ ଯାଏ ଖାଲି ଚାହିଁ ଚାହିଁ ଝାଉଁବଣ ଆଡ଼େ
ରଖିଲିନି ଦୁନିଆଁ ଖବର କିଛି
ଅନୁଭୂତି ପେଡ଼ି ମୋର ଝାଡ଼ିଝୁଡ଼ି ଦେଲି ।
ମୋ'ଆଖିକୁ ସଂକ୍ରମିଲା ତାର ସବୁଜିମା
ମୁଁ ଦେଖିଲି ଦୁନିଆକୁ ପୁଣି ଥରେ
ନୂଆ କରି, ରଙ୍ଗ ରୂପ ଭରା
ଦରିଆଟା ନୂଆ ନୁହେଁ

ସବୁଦିନ ଚିହ୍ନା ମୁହଁ ତାର
ତଥାପି କାହିଁକି ଅବା ନିଜକୁ ମୁଁ ଭୁଲିଲି ଜାଣେ ନାଁ
ଦରିଆର ବିଶାଳତା ପାଖେ ଅସ୍ତିତ୍ୱ ହରାଇ
ମୁଁ ପାଇଲି ବଂଚିବାର ସ୍ୱାଦ ।
ଶ୍ରାବଣର ବର୍ଷାଧୂଆ ଆକାଶ
ଅଭିମାନିନୀଟା କାନ୍ଦୁଥିଲା ତୁହାଇ ତୁହାଇ
ମେଘର ଗୁରୁଗମ୍ଭୀର ଧ୍ୱନି ବଜ୍ରର ନିର୍ଘୋଷ
ତା'ପାଇଁ ସବୁ ଅର୍ଥହୀନ
ସେ ଜାଣିଛି ନୂତନର ସ୍ମାରକୀ ଏଇ ବର୍ଷା
ଆଗାମୀର ଶୁଭ ଆବାହନୀ
ତଥାପି ସେ କାନ୍ଦୁଥିଲା ଅବୁଝା ଶିଶୁଙ୍କ ପରି
ଅଥାର ପରି ମୁହଁ ନନ୍ଦି ରୁଷି ବସୁଥିଲା
ଘଡ଼ି କି ଘଡ଼ି ।
ମୁଁ ଶ୍ରାବଣୀ ଆକାଶକୁ ଚାହିଁ
ତା'ଭିତରେ ଦେଖିଲି ମୋ'ନିଜ ପ୍ରତିଛବି
ମୋ'କାମନା ମୋ'ଆଶାର ବାରିଧାରା
ଝରୁଥିଲେ ଧାର ଧାର ହୋଇ ।
ଯେଉଁ ଆଶା ମୋତେ ବଂଚିବାକୁ
ପ୍ରେରଣା ଦେଇଛି
ସମଦୁଃଖିନୀ ବିଚାରୀଟାକୁ ବୁଝାଇଲି
''କାନ୍ଦେନାଲୋ - ମୋ ସୁନାଟା ପରା
କାନ୍ଦିବାତ ସମସ୍ୟାର ସମାଧାନ ନୁହେଁ''
କିନ୍ତୁ ତା'ଆଖିର ଲୁହ ପୁଣି ସଂକ୍ରମିଲା ମୋ ଆଖିକୁ
ହଠାତ୍ ଆବିଷ୍କାର କଲି
ମୁଁ ବି କାନ୍ଦୁଛି... ।

◆ ◆

# ଆହତ ସ୍ୱର

ଭାବିଥିଲି କେହି ଜଣେ ଆସିଥାନ୍ତା
ତର୍ଜନୀ ସଂକେତ କରି କହିଥାନ୍ତା
ଭୁଲ୍ ଠିକ୍‌ର ପ୍ରସଙ୍ଗ
ମୁଣ୍ଡ ଖେଳାଇଥାନ୍ତା ମୋ'ଭବିଷ୍ୟତ ଲାଗି
ଉପଦେଶ ଦେଇଥାନ୍ତା ବକ୍ର ଗମ୍ଭୀର କଣ୍ଠରେ
ପିଠିରେ ହାତ ବୁଲାଇ କହିଥାନ୍ତା
ସବୁ ଅଭିମାନ ଭୁଲି ଶିଶୁ ଭଳି
ହସିଦେ ଥରେ ମୋ'ଲାଗି ।
କିନ୍ତୁ ହାୟ, ଯିଏ ମଞ୍ଚକୁ ଆସିଲେ
ଶୁଣାଇଲେ ନିଜନିଜ ପାରିଲା ପଣର କଥା
ଶୁଣାଇଲେ ଧର୍ମତତ୍ତ୍ୱ
କେତେ ଯେ କେଜାଣି ।
କେହି ଦେଖିଲେନି ମୋର ଆଖିତଳ କଳାଦାଗ

ଶୁଣିଲେନି ଦୀର୍ଘଶ୍ୱାସ ଶବ୍ଦ ମୋର
ସମୟ କଲେନି ଟିକେ ଶୁଣିବାକୁ
ମୋର କିଛି ଅକୁହା କାହାଣୀ ।
ଦିନେ ସୂର୍ଯ୍ୟୋଦୟର ଲଗ୍ନରେ
ଦିବ୍ୟଧାମୁଁ ଓହ୍ଲାଇ ଆସିଲେ ଜଣେ
ଶୁଭ୍ରବର୍ଣ୍ଣ ଉଜ୍ଜ୍ୱଳ ପୁରୁଷ
ମୋର କଳ୍ପନାଠାରୁ ସୁନ୍ଦର
ମୋ'ଚିନ୍ତାଠାରୁ ଉନ୍ନତ ଥିଲା
ତାଙ୍କର ଲଲାଟ ଆଭା
ଚଉଦିଗ ଭରି ଚହଟି ଯାଉଥିଲା
ତାଙ୍କ ନିଶ୍ୱାସ ସୁବାସ
ତାଙ୍କଠାରୁ ପଦେ ମିଠା କଥା
ଶୁଣିବାର ଆଶା କ'ଣ ଖୁବ୍ ବେଶି ଥିଲା ?
ମୁଁ କ'ଣ ବୁଝିଥିଲି ମଥା ଟୁଙ୍ଗାରିବାଠାରୁ
ବେଶି କିଛି ଆଶା ମୋର ଦୁରାଶା ବୋଲି ?
ବଧିର ସେ କେମିତି ଶୁଣିଥାନ୍ତେ
ବହୁ କାଳୁ ସାଇତିଥିବା ମୋ
ଗୋପନ କାହାଣୀ
ମୁଁ ଦେଖିଲି କ୍ରୋଧ, ଦୁଃଖ ଅବା ଆବେଗରେ
ଖାଲି ଯାହା ତାଙ୍କ ଓଠ ଥରି ଉଠୁଥିଲା

◆ ◆

# ସ୍ୱପ୍ନାହତ

ମୁଁ ତ ପୁଣି ବଞ୍ଚିଥିଲି ଆଜିଯାଏ
ଆଖିରେ ଅନ୍ଧପୁଟୁଳି ବାନ୍ଧି
ଦେଉଥିଲି ବଶମ୍ୱଦତାର ପରୀକ୍ଷା
ହାତରେ ଛୁଇଁ ଜାଣି ପାରୁଥିଲି
ଦୁଆର ଝରକା, ନୀରବତା ସହିତ ମୁଁ
କହୁଥିଲି କେତେ ଜାତି କଥା ।
ଶୁଣିଥିଲି କାଉ ଡ଼ାକିଲେ କୁଣିଆ ଆସନ୍ତି
ମୋ'ଘର ଚାଲରେ କାଉ ବସୁଥିଲା ସଂଜେ କି ସକାଳେ
ତଥାପି ବି ପାଦଚଲା ରାସ୍ତାଟିର ସ୍ୱପ୍ନ ଥିଲା
ମୋ'ପାଇଁ କି ସବୁ କାଳେ କାଳେ ।

x x x x

ମୁଁ ତ ମୋର ବଞ୍ଚି ଶିଖିଥିଲି
ତୀବ୍ର ଆଲୋକ ବନ୍ୟାରେ ଆଖିବୁଜି

ଅନ୍ଧାରକୁ ଢ଼ୋକ ଢ଼ୋକ ପିଇ
ଆପଣା ପାଦକୁ ଚାହିଁଚାଲୁଥିଲି
ଚାରିପାଖ ସଂସାରକୁ
ଅନାସକ୍ତ ସନ୍ୟାସୀର ଦୃଷ୍ଟିରେ ଅନାଇଁ ।
ତୁମେ କାହିଁକି ଆସିଲ ଅଦିନରେ
ମୂଳ ଶୁଖି ଯାଇଥିବା ଲଟାରେ ଢ଼ାଳିଦେଇ
କେଇ ପୋଷ ପାଣି
ପଥୁରିଆ ମାଟିକୁ ଖୁସାଇ ଦେଲ
ଖତସାର ଦେଲ, କାଳିଗାଈ ଖାଇଯିବ ବୋଲି
ବାଡ଼ବନ୍ଦି କରିଦେଲ,
କ'ଣ ମନରେ ଥିଲା ଆଜିଯାଏ ପାରୁନି ତ ଜାଣି ?
ପୁଣି ଭାବେ,
ମୁଁ କ'ଣ ଆଜିଯାଏ ଦେଖୁଛି କି
ଦୀର୍ଘତମ ଅସରା ସପନ
ମଣିଷର ସ୍ନେହ ଶ୍ରଦ୍ଧା ମୋ'ପାଇଁକି
ଚିରଦିନ ନିଅଣ୍ଟିଆ
ଶୁଝିବି କେମିତି ସତେ
କେତେ ଜନ୍ମଗଲେ ତୁମ ଋଣ !
ମୁଁ ଜାଣିଛି ସ୍ୱପ୍ନମାନେ ଦିଅନ୍ତିନି ଧରା
କହିଦିଅ, ଅନ୍ଧପୁଟୁଳି ଖୋଲିଲେ ସତେ କ'ଣ
ଜଳିଯିବ ଚଉଦିଗ,
ଅବା ଦିଶିବ ସୁନ୍ଦର ଏ ସଂସାରସାରା ?

◆ ◆

# ସମୀକ୍ଷା

କେମିତି ଆସିଲି ସତେ ଏତେ ଦୂର ପଥ
ନତ ମୁଖେ ପାଦ ଆଙ୍ଗୁଠିକୁ ଚାହିଁ
ଏକ ମୁହାଁ ହୋଇ
ନିଶ୍ୱାସ ନେବାକୁ ଦଣ୍ଡେ ଅବସର ପାଇନି ଜୀବନେ
ସୁଖରେ ମାରିନି ଦିନେ ତନ୍ଦ୍ରାଳସେ ହାଇ ।
'ଡ଼ିବି'ଠାରୁ ''ଟି.ଭି'' ଯାଏଁ
ତନ୍ଦ୍ରାଠାରୁ ବିଷୁବ ଅରଣ୍ୟେ
କେମିତି ଆସିଲି ସତେ !
ସମୀକ୍ଷା ତ କଲି ନାହିଁ ଦିନେ ।
'ଡ଼ିବି' ପାଇଁ ଆବେଗରେ ଆଖି ମୋ ସଜଳ
ଅତୀତର ପ୍ରଚ୍ଛଦ ପଟରେ
ସ୍ମୃତି ସବୁ ଭସାମେଘ
କିଏ କଳା କିଏ ବା ଧବଳ ।

'ଟି.ଭି.' ମୋର 'ସମୟ'ର ପ୍ରତିନିଧି
ମୋ'ଆଖିକୁ କ୍ଳାନ୍ତ କରେ
ଛାଇଯାଏ ମୋର ସବୁ ଆପଣାର ପଣ
ଛାଏଁ ଛାଏଁ ସଂକୁଚିତ ହୋଇଯାଏ
ବନ୍ଧୁତ୍ୱର ବଢ଼ି ଆସିଥିବା ହାତ
ଦି'ପହରେ ଦୁଆରେ କବାଟ ପଡ଼େ
ପରକୁ ଆପଣା କରି ବଞ୍ଚୁଥିବା ଜୀବଟିର
ଭାଙ୍ଗି ରୁଜିଯାଏ ସବୁ ଟାଣ ।
ବାଟରେ ଆସିଲି ଛାଡ଼ି କଅଁଳିଆ ଶାଗୁଆ କିଆରୀ
କେତେ ଦୂରେ ପାଏ ନାହିଁ ଆଖି
ଧୋବ ଫରଫର କେଶ ଅନୁଭୂତି ଅନ୍ୱୟ ଜୀବନ
କଇଁଚର ଟାଣ ପିଠି ଲୁହାଠାରୁ କଠିନ ହୃଦୟ
କେଉଁ ମାପ ଫିତା ଦେଇ
ମାପିବି ମୁଁ ଗତିପଥ ମୋର ?
କେଉଁ ଗୁପ୍ତ ପଥ ଅଛି ଅତିକ୍ରମ ଯିବା ପାଇଁ
ଦୁର୍ଭେଦ୍ୟ ଏ ସମ୍ମୁଖ ପ୍ରାଚୀର ??

◆ ◆

# ସୁମନାସ

ତୁମପାଇଁ ପଠାଉଛି ଶୁଭେଚ୍ଛାର ପୁଷ୍ପଗୁଚ୍ଛ
ମନାସୁଛି ଶୁଭ ଚିରଦିନ
ତୁମେ ଅସରନ୍ତି ପଥେ ଏକାଗ୍ର ପଥିକ
ମୋ'ଆୟୁଷ ନେଇ ସଦା
ସମୟକୁ ପରାଜିତ କରି
ଯଶୋଦେହେ ରହିଥାଅ ଚିର ଆୟୁଷ୍ମାନ ।
କେବେ ଲାଗେ ତୁମେ ସମ୍ମାନନୀୟ
ମୋର ପୂର୍ବପୁରୁଷ, ତୁମରି ତ୍ୟାଗର ଫଳ ହାତେଧରି
ଏଇଲାଏ ପହଞ୍ଚିବ ମୋ କୁଟୀର ଦ୍ୱାରେ
ଢାଳିଦେବ ଅନୁଭୂତି ତୀର୍ଥଜଳ
ଛେଉଣ୍ଡ ମୋ ମସ୍ତକ ଉପରେ
କେବେ ଲାଗେ ତୁମେ ମୋର ପରମ ଆତ୍ମୀୟ
ଲେଖିଅଛ ସୁଖ ଦୁଃଖର ଖବର ବାରମ୍ବାର

ଅଭିମାନ କରିଛ କି
ଠିକ୍ ଭାବରେ ଯେବେ ଚଞ୍ଚଳ ମୁଁ ଲେଖିନି ଉତ୍ତର ।
ତୁମେ ମୋର ଭାଇବନ୍ଧୁ ପର୍ବ ଦିନେ ମନେ ପଡ଼ ଭାରି
ରାକ୍ଷୀଟିଏ ନେଇ ଦିନେ ପହଞ୍ଚିବ
ଅଳି କରୁଥିବ ମୋତେ ପିନ୍ଧାଇ ଦେବାକୁ ବେଗେ
ଯିବି ମୁଁ ମୋ'ନିଷ୍ଠୁର ଅତୀତ ପାଶୋରି ।
କେବେ ଲାଗେ ତୁମେ ମୋ'ଅବୁଝା ପୁଅ
ରୁଷିଯିବ ଏଇଲାଏ ନ ଦେଖିଲେ ମୋତେ
ଧାଇଁ ପଳାଇବ ନିଘେ ଆଗେ ଆଗେ ମୁଁ ଧାଇଁଲେ
ଅଝଟ ପଣିଆଁ ତୁମ ସହୁଥିବି ଚିରଦିନ
ସତେ ତୁମେ ଯାଉନ ପରତେ ?
ତୁମେ ଶତାବ୍ଦୀ ତପନ,
ତୁମେ ହିଁ ତ ଅନନ୍ତ ସମୟ ଭାଲେ ବିଜୟର ଟୀକା
ଆମେ ସଭିଏଁ ତୁମର ଆପଣାର
କେଉଁ ଦୁର୍ବଳ ମୁହୂର୍ତ୍ତେ ଭାବିବନି
ଏ ସଂସାରେ ତୁମେ ବୋଧେ ସବୁଠାରୁ ଏକୁଟିଆ
ଘର ଭର୍ତ୍ତି, ମନ ଭର୍ତ୍ତି ଖୁସିଥାଇ
ତଥାପି ବି ଆମେସବୁ ଏଇମିତି
ତୁମଭଳି ଏକା ।

◆ ◆

# ହଜି ଯାଇଥିବା ଝିଅର ଠିକଣା

ତୁ ହଜିଗଲୁ । ଜାଣୁ ଜାଣୁ ଇଚ୍ଛାକରି ଗୋଡ଼ ଖସେଇ
ଅକାତ ପାଣିକୁ ଗଲୁ
ରୂପ କଥା ସାଧବ ଝିଅପରି
ପଦ୍ମ ଖାଲି ଘୁଞ୍ଚିଗଲା ଦୂରକୁ ଦୂରକୁ
ବାପା ବୁଝିଲେନି ମନ
ପିଠିକୁ ଆଉଁଷି ଦେଲେ ''ମାଆ ମୋର
ଧନ ମୋର'' କହି କେତେଦିନ ଭୁଲେଇ ପାରନ୍ତେ ଅବା
ତୋ'ଭଳି ଅଝଟିଆ ଝିଅକୁ କହିଲୁ ।
ଅଧିକା କ'ଣ ହେଲା ?
ଖାଲି ସିନା ହଜିଗଲା ନିଜ ପରିଚୟ
ଗୁରୁବାର ଝୋଟି ଅଙ୍କା ଅତୀତକୁ
ଛାଇଗଲା ଅଦିନ କୁହୁଡ଼ି
ପାଦ ତଳୁ ମାଟି ଖସିଗଲା

ଏକମାତ୍ର ସାର ତୋର ପ୍ରାଣପ୍ରଣେ
ଧରିଥିବୁ ଗଛକୁ ଜାବୁଡ଼ି ।
ସମସ୍ତେ ଦେଖିବେ ମୁହଁ ହସ ଖୁସି ଆପଣାର ପଣ
କିଏ ସେ ବୁଝିବ ଅବା ଦୁଃଖ ତୋର
କିଏ ଚିରି ଦେଖାଇବ ତୋ ଜଉମୁଦ ଦିଆ ମନ
ଯଦି କେବେ ଅଜସ୍ର କ୍ଳାନ୍ତିରେ ତୋର
ଛାତି ତଳେ ହେବ ଭୂକମ୍ପନ
ମୋ'ସୀମିତ ଭାବନା ଭିତରେ
ଆଜିଯାଏ ପାରୁନାହିଁ ବୁଝି
ଠିକ୍ କି ଭୁଲ୍ ତୋର
ଆଜି କି ପାଇବୁ ଚିଠି ତୁ ସେଇ ଆଗ ଠିକଣାରେ
ଅବା, ଅନେକ ଅବୁଝାମଣା ବୋଝ ବୋହି
ସବୁ ଦିନ ଲାଗି ଗଲୁ ହଜି ।
ନଦୀ ହଜେ ସାଗରରେ
ପକ୍ଷୀ ହଜେ ଆକାଶ ବୁକୁରେ
ତୋ'ହଜିବା ସାର୍ଥକ ହେଉ
ସେହି ପୂତ ପ୍ରଣୟର ସୁରଧୂନୀ ତୀରେ ।

◆ ◆

# ଭୟ

॥ ୧ ॥

ବୋଉ ମୋର କହିଥିଲା
ଯେଉଁଠାରେ ଭୟ ଅଛି
ଜୟ ନିଶ୍ଚେ ସେଠାକୁ ଆସିବ
ଭୟରେ ସଂତ୍ରସ୍ତ ମୁହିଁ
ସେ କେଉଁ ପକ୍ଷୀର ଡ଼େଣା
ସମଗ୍ର ସତ୍ତାକୁ ମୋର ଆବୋରିଛି
ସେ ଭୟରୁ ମୁକ୍ତି କ'ଣ ଜୀବନେ ସମ୍ଭବ !
ତୁମେ ପରା କହିଥିଲ
'ନିର୍ଭୟ କର ପ୍ରଭୁ ରାଜାରାମ'
ମୁଁ ତେବେ ମାନିବି କାହାକୁ ?
ବୋଉ କହିଥିବା କଥା ସବୁ କ'ଣ ମିଛଥିଲା
ଅବା ସବୁ ଅର୍ଥ ବଦଳାଇ ଦେଲା
ବୁଝି ମୁଁ ପାରୁନି ଜମା
ବୋଉ ମୁହଁ ତୁମ ମୁହଁ ଏକାଭଳି ଦିଶିଯାଏ
ସେ ମୁହୂର୍ତ୍ତେ ଭରିଯାଏ
ଅଭିମାନେ ବୁକୁ ।

॥ ୨ ॥

କାହାକୁ ଡ଼ରିବି କେତେ

ଭୟ ତ ମୋ ଶିରା ପ୍ରଶିରାରେ

ପାନରୁ ଖସିଲେ ଚୁନ

ଏଠି ହୁଏ ନୂଆ କୁରୁକ୍ଷେତ୍ର

ସମୟଟା ଭିଡ଼ିମୋଡ଼ି ହୁଏ ଖାଲି

ପେଟ ପୁରିଯାଇଥିବା ଅଜଗର ପରି

'ଭୟ' ରଂଗେ ରଂଜି ହୋଇ

ମୋ ଦୁନିଆ ଦିଶଇ ବିଚିତ୍ର ।

ଭୟରେ ବଦଳିଯାଏ ମୋ ଚେହେରା

ନିଶ୍ୱାସର ବେଗ ବଢ଼ିଯାଏ

ରାସ୍ତାରେତ ପ୍ରତିକ୍ଷଣେ ଦୁର୍ଘଟଣା ଭୟ

ବଂଚିବା ସବୁଠୁଁ ବେଶି ଆଚମ୍ବିତ

ମୃତ୍ୟୁ ଯହିଁ ଟ୍ରାଫିକ୍ ପୋଲିସ ପରି

ଛକ ମୁଣ୍ଡେ ଚାହିଁ ରହିଥାଏ ।

ମୁଁ ଚାହିଁଛି ଇଂଗିତରେ ତାର

'ଭୟ'ର କୁହୁଡ଼ି କେବେ ଫର୍ଚ୍ଚାହେବ

ଦିଶିଯିବ ମୋ'ଆଶାର ନୂତନ ସହର -

॥ ୩ ॥

ଭୟ ତ ଗୁରୁଜନଙ୍କୁ

ଭୟ ପୁଣି ସାର୍‌ଙ୍କ ନାଲି ଆଖି ବେତର ପାହାର

ଭୟ ପୁଣି ପଡ଼ୋଶୀଙ୍କୁ

କାଳେ ଦିଶିଯିବ ମୋର କଲେଇ ଛଡ଼ା ସଂସାର

ଅସରନ୍ତି ଯାତନା ଭଣ୍ଡାର ।

ଭୟ ପୁଣି ମୋ'ଛୁଆଙ୍କୁ

ଯଦି ସେ ପଚାରି ଦେବେ

''କଣ ରଖିଛ ଆମ ଭବିଷ୍ୟତ ପାଇଁ''

ସଂସାରର ସବୁରିକୁ ଅଣ୍ଟିରେ ପୁରାଇ

ଅଣ୍ଟି ଯେବେ ଚିରିଗଲା

ଜୀବନ ପାଲଟିଗଲା ଦହ ଦହ ମରୁଭୂଇଁ

ସେ କଥା ତ ଦିନେ ହେଲେ
ବୁଝିଇନି କେହି ।
।। ୪ ।।
ନିଜର ଛାଇକୁ ଭୟ
ଯଦିଚ ଜାଣିଛି ମୁଁ ସେ ଅତି ବଶମ୍ବଦ
ଠକେ ନାହିଁ କେବେ
ତଥାପି ଅନ୍ଧାରେ ହଜେ ପରିଚୟ ତାର,
ଆକୃତି ବଦଳିଯାଏ
ବଦଳେ ବି ଛାଇତଳେ
ବହୁଦିନୁ ପରିତ୍ୟକ୍ତ ଇଚ୍ଛାର ସହର ।
ଭୟ ଆସେ କେତେଦିନ ଠକୁଥିବି ମୋ'ବାପାଙ୍କୁ
ଭଲ ହେବେ ନିଶ୍ଚେ ବୋଲି
ଆଜି କାଲି ସମୟ ଗଡ଼ାଇ ?
ଆୟୁଷର ରେଖା ତାଂକ ବଢ଼ାଇବି ଟାଣିଭିଡ଼ି
ଯଦିଚ ଗ୍ଲାନିଭାରରେ ସବୁଦିନ
ପଡୁଥିବି ନଇଁ
ଭୟ ଲାଗେ ବାର୍ଦ୍ଧକ୍ୟର ରୂପଦେଖି
ସତେ ମୋର ହେବ ଏହି ଦଶା !
ଅସରନ୍ତି ଜୀବନକୁ ଭୟ ଲାଗେ
କାଳେ ମୋର ଛାଡ଼ିଯିବ
କେଉଁଦିନ ଧାଇଁବାର ନିଶା ।
ନିଶା ଛାଡ଼ିବାର ଲଗ୍ନ କ୍ଳାନ୍ତିମୟ
ମୁଁ ଜାଣିଛି, ନ ଆସୁ ସେ ଦିନ
ଆଖି ବୁଜି ହେଲାଯାଏ ପାଦଚାଲୁ
'ଭୟ' ଆସିବ କେମିତି
ମୁଁ ଯଦି ଜୀବନକୁ ଭଲପାଉଥିବି
ଅବା ସପନ ଦେଖିବା ପାଇଁ ନ କରିବ ମନ ।

◆ ◆

# ରାସ୍ତା

ଯେଉଁ ଦିଗକୁ ଚାହିଁବ
ସେ ଦିଗରେ ରାସ୍ତା
ଯେଉଁ ମଣିଷ ଜାଣିନି
କିଏତାର ଘରବାହୁଡ଼ାଣିବାଟ
ସଂଙ୍ଗ ହେଲେ,
ସିଏ ହେବ ଅନେକ ଅବସ୍ଥା
(୨)
ରାସ୍ତାର ମାଟି ଉପରେ ମାଟିତଳେ
ନୀଳ ଆକାଶରେ
କିଏ ଭଲା ଚଢ଼େଇକୁ ଶିଖାଇଛି
ଚିହ୍ନିବାକୁ ତା'ବସାର ରାସ୍ତା
କିଏ ଅବା ଶିଖାଇଛି ମଣିଷକୁ
ଦି'ପହରେ ଭୁଲିବାକୁ ନିଜର ଠିକଣା
ରଙ୍ଗୀନ ଚଷମା ପିନ୍ଧି
ଜାଣୁ ଜାଣୁ ଝୁଣ୍ଟିପଡ଼ି ଇଚ୍ଛା କରି
ହେବ ବାଟବଣା ।

(୩)
ରାଜରାସ୍ତା ଦେଖିଛତ
ଦେଖିଛକି ଅଣଓସାରିଆ
ଗୋଟେ ଚଲାବାଟ
ଯେଉଁଠାରୁ ଯାଇହେବ
ଚୁପ୍‌ଚାପ୍ ଏକୁଟିଆ ହୋଇ
ଅନେକ କ୍ଳାନ୍ତିସେଇଠି ମେଣ୍ଟିଯିବ
ତୁମପାଇଁ ଅଧୀର ଆବେଗନେଇ
ସେଠି କିଏ ବସିଥିବ ଚାହିଁ ।
(୪)
ନଦୀ ମିଶେ ସାଗରରେ
ରାସ୍ତା ସିଏ ଦେଖିଥାଏ ସତେକି ଆଗରୁ
ଜୀବନଟା ଲମ୍ବିଯାଏ ମୃତ୍ୟୁଯାଏ
ରାସ୍ତା ଦିଶେ ଚକ୍‌ଚକ୍, ଚାହୁଁ ଚାହୁଁ
ଦିଗ୍‌ବଳୟ ଘୁଞ୍ଚିଯାଏ
ଆଖି ପାହାନ୍ତାରୁ
ରାସ୍ତା ସତେ କେତେ ବଣ୍ଡମ୍ଦ
ଥରେ ଭଲ ପାଇଗଲେତାକୁ
ଅନୁଭବ କରିହୁଏ ଜୀବନରେ ବଞ୍ଚିବାର ସ୍ୱାଦ
(୫)
ସେ କେଉଁ ଦରଦୀ କବି
ଯିଏ ଦିନେ କହିଥିଲା
କଳାମଣିଷର କାନ୍ଧପରି ଦିଶୁଅଛି
ସବୁ ରାସ୍ତା
ଯିଏ ଖାଲି ବୋଝ ବୋହିପାରେ
ତାକୁ ମୁଁ ଶୁଭେଚ୍ଛା ଜଣାଏ ମୋର
କେମିତି ସେ ବୁଝିଥିଲା
ରାସ୍ତାଟା କାହାରି ନୁହେଁ
ଯଦିବା ସେ ଉପସ୍ଥିତ ଠିକଣାଟିରେ ପହଞ୍ଚାଏ,
ରାସ୍ତା ଥରେ ମିଳିଗଲେ
ଆଉ କିଏ କାହାକୁ ପଚାରେ ।

◆ ◆

# ଉଜ୍ଜ୍ୱଳ ପୁରୁଷ

ଦିନକୁ ଦିନ ତୁମେ ଉଜ୍ଜ୍ୱଳ ଦିଶୁଛ
ମୋ'ବିଶ୍ୱାସର ରଙ୍ଗରେ
ଝଟକି ଉଠୁଛି ତୁମ କ୍ଳାନ୍ତ ଆଖି
କୁଞ୍ଚିତ କପାଳ
ତୁମ କଥା ଏଥର ସ୍ପଷ୍ଟ ଶୁଭିଲାଣି
ଶୁଭିଲାଣି ସ୍ୱାଭାବିକ ଶ୍ୱାସଶବ୍ଦ
ଶୁଭିଲାଣି ମନ୍ଦିରରେ ଗହଳଚହଳ ।
ତୁମ ସ୍ୱପ୍ନ ସଂଚରି ଆସୁଛି ମୋ'ଆଖିକୁ
ମୋ'ଚାହାଣୀ ଚାହିଁ ଚାହିଁ ଯାଉଛି ବଦଳି
ମୁକ୍ତାର ସନ୍ଧାନ ପାଇଁ ମୁ ଡୁବିଯାଉଛି
ଅଥଳ ଗଣ୍ଡଜଳରେ,
ତୁମେ ଜାଣ, ମୋ ଭାଗ୍ୟ ମୋ'ଭବିତବ୍ୟ
ଯାହା ତୁମେ ଲେଖିଥିଲ ଲେଖନୀ ତାଳପତ୍ରରେ

ତାହା ନୁହେଁ ଏ ସଂସାରେ ଆଉ କାହା ଭଳି ।
ତୁମେ ଯେଉଁ ପବନରେ ନିଶ୍ୱାସ ମାରୁଥିଲ
ସେ ପବନରେ ବାରୁଦ ଆଉ ପୋଡ଼ା ଡ଼ିଜେଲ୍‌ର ଗନ୍ଧ
ଚହଟିଯାଏ, ତୁମେ ଯେଉଁ ତୁଠରେ ଗାଧୋଉଥିଲ
ସେ ତୁଠରେ ଭାସି ଆସି ଶବଲାଗେ
ଅଙ୍କାବଙ୍କା ପାଲ୍‌ଟିଯାଏ ସବୁ ସଳଖ
ପରିଚିତ ପାଦଚଲା ରାସ୍ତାତକ
କିଏ ସେ ଯିବ ବା ଆଉ
କଳପାଣି ଥାଉଁ ଥାଉଁ ନଈତୁଠ ଯାଏ ?
ଏ ଘର ମଣିଷ ଆଜି ଚିହ୍ନେନାହିଁ ଆରଘର ପଡ଼ୋଶୀକୁ ।
ତୁମପରି ବସେ ନାହିଁ କାହାଘରେ
ଖାଇବାକୁ ଚାହାଟିକେ ବେଳ ଅବେଳରେ
ଚାହାଣୀ ବଦଳିଯାଏ, ଭଦ୍ରାମି ବି ବାଧାପାଏ
ନିରୁତା ମନର ମୂଲ କିଏ ଦେବ
ଆଜିର ଏ ହିସାବୀ ସଂସାରେ !
ତୁମେ କାହିଁକି ବ୍ୟାପିଯାଉଛ ମୋ'ଭିତରେ
ସମୟର ବ୍ୟବଧାନେ ଆହୁରି ଉଜ୍ଜଳ ଦିଶ
ପାରେ ନାହିଁ ଜାଣି
ତୁମକୁ ସୁମରି ଛଟପଟ ହେଲାବେଳେ
କାହାକୁ ବାଣ୍ଟିପାରେନି
ରକ୍ତକ୍ଷରା ଅନୁଭୂତିରୁ ଟେନାଏ
କିଏ ସେ ବୁଝିବ ମୋତେ
ତୁମକୁ ଭାଳିଲାବେଳେ
କାହିଁକି ସମୟସ୍ରୋତ
ଅଜାଣତେ ବହଇ ଉଜାଣି ।

• •

# ଅଶ୍ରୁ ନୈବେଦ୍ୟ

ତୁମେ ଜାଣିଛ
ମୋ କାଛରେ ଥାନ ନାହିଁ
ତୁମ ଫଟୋ ଝୁଲାଇବାକୁ
ଧୂପଦୀପ ଦେଇ ପୂଜା କରିବାକୁ
ମୋର ସମୟ ବି ନାହିଁ
ଏଇମିତି ଜୀବନଟେ
ତୁମେ ପରା ମୋ'ଲାଗି ମନାସିଥିଲ
ମୋର ଆଉ ଅଭିମାନ
ଆଜି କାହାପାଇଁ
ଆକାଶରେ କୋଟି କୋଟି ତାରକା ଭିତରୁ
ମୁଁ ତୁମ ମୁହଁ ଚିହ୍ନି ପାରୁନି
ଆଖି ବୁଜିଲେ ଦିଶୁଛ
ସକଳ ମହିମା ସହ
ଦାଉଦାଉ ହୋଉ
ତୁମେ ଆଜି ନାହଁ ବୋଲି ଭାବିବାକୁ
ସତ ବଳୁନାହିଁ, ଦିନ ଯେତେ ଗଡ଼ିଯାଏ
ତୁମେ ଆସ ସେତିକି ପାଖେଇ ।
ମୋ'କାଛରେ ତ ମୋର କ୍ରୁଶବିଦ୍ଧ ହେବାର ଛବି
ଚାରିଆଡ଼େ, ତୁମ ଛବି ରଖିବି ଯେଉଁଠି ?

କଣ ପାଇଁ ସବୁତକ କାରୁଣ୍ୟର ମୁଦ୍ରା ମୋତେ ଦେଇଗଲ
ଆଖି ପିଛୁଳାକେ ଆହା
ସାରିଦେଲ ତୁମରି ପାଇଟି ।
ତୁମେ ଜାଣ, ମୁଁ ଶୁଝୁଛି ଋଣ
ଶୁଝୁଥିବି ଶେଷ ନିଶ୍ୱାସ ପର୍ଯ୍ୟନ୍ତ
ଖୋଲିବିନି ପାଟି
ଲୁହ ନ କାନ୍ଦି ମୁଁ ଏଠି ଝାରିଦିଏ ରକ୍ତବୁନ୍ଦା
ନିଃଶବ୍ଦ ରାତିରେ
ଆହୁରି ଜାଣିଥାଅ ମୁଁ ଜାଣିଛି
ଦୀର୍ଘଦିନ ଅଭ୍ୟାସରେ ଛଳନା ବି କରିହୁଏ
ଏଠି ଖୁବ୍ ଖୁସି ଅଛି ବୋଲି
ମୋ'ହାତ ରକ୍ତାକ୍ତ ହୁଏ ସ୍ମୃତିର
କାଚଟୁକୁରା ସାଉଁଟି ସାଉଁଟି ।
ତୁମ ଛବି ଆଙ୍କିଛି ମୋ'ମନ ତଳେ
ତୁମ ରୂପ ଦିଶୁଛି ମୋ ବିଶ୍ୱାସର
କୋଟି କମ ଦର୍ପଣ ଭିତରେ,
ତୁମ ହସ ବ୍ୟାପିଅଛି ମୋ ଆତ୍ମାରେ
ତୁମରି ନିଶ୍ୱାସ ଶବ୍ଦ
ଶୁଭେ ମୋ'ହୃଦୟ ମନ୍ଦିରେ ।
କିବା ଲୋଡ଼ା କାଛରେ ପିଟିବା କଣ୍ଟା
କଣ୍ଟାର ଆଘାତେ ଆହା
ରକ୍ତାକ୍ତ ମୋ ମନ
ମୋତେ ଭୁଲ ବୁଝିବନି,
ତୁମ ପାଇଁ ମୋ'ଛୋଟିଆ ବୁକୁ ତଳେ
ରଖିଛି ମୁଁ
ଆନ୍ତରିକତାରେ ଭିଜା
କେଇ ଭଞ୍ଜ ଥାନ ।।

◆ ◆

# ମୋ ନାନୀ ପାଇଁ

କେଜାଣି କ'ଣ ପାଇଁ ଆଜି
ଅତୀତର ପୃଷ୍ଠା ସବୁ ଉଡ଼ିଯାଇଛି,
ଖେଳେଇ ହୋଇଯାଉଛି
ସଜାଡ଼ି ଦେବାକୁ ମନ ହେଉଛି ଯେ, ବଳ ପାଉନି
କ'ଣ ଲାଭ ସେ ଅଶ୍ରୁସିକ୍ତ ପୃଷ୍ଠାସବୁ
ଚାଳିଶା ଚଷମା ପିନ୍ଧି ନିରେଖି ଦେଖିବା
ପୁରୁଣା କ୍ଷତ ଉଖାରି
ନିଜ ଭିତରେ ନିଜେ ଲହୁଲୁହାଣ ହେବା
ତଥାପି ବି ସମସ୍ୟା ସବୁ ବାଟ ଓଗାଳିଲାବେଳେ
ତୋ'କଥା ଭାରି ମନେ ପଡ଼େ,
ଭିନ୍ନ ଦୃଷ୍ଟିରେ ଜୀବନକୁ ଦେଖିବା ମୁହୂର୍ତ୍ତରେ
ତୁ'ଠିଆ ହୋଇଥାଉ ମୋ'ସ୍ମୃତିର ପରଦା ଉହାଡ଼େ ।
କେବେ ଶୁଣେ ବ୍ୟଥାତୁର କଥା ତୋର

କେବେ ଶୁଭେ ଆନନ୍ଦର ଡ଼ାକ, ମୁଁ ଆନମନା ହୁଏ
ମୋ'ଭିତରେ ଫିଟିପଡ଼େ ଝରଣାଟେ
ମନେ ହୁଏ ତୁ ମୋତେ ଅନାଇଛୁ ସେଇମିତି
ମୋ'ଆସିବା ଡ଼େରି ହେଲେ
ତୋତେ ଛମା କରୁନାହିଁ ଭୋକ ।
ଖାଲି କ'ଣ ଗୋଟିଏ ମା'ପେଟରୁ ଆମେ ଦିହେଁ
ଦି ଯୁଗ ତଫାତରେ ଛୁଇଁଥିଲେ ଭୁଇଁ
ଏତିକି କ'ଣ ତୋର ମୋର ସଂପର୍କ ?
ସଭିଏଁ ତ କହୁଥିଲେ ତୁ ମୋର ବୋଉ ବୋଲି
ମୁଁ କିନ୍ତୁ ବୁଝିଥିଲି ତୁ ମୋ ବଡ଼ଭାଇ ।
ତୋ'ହାତ ଧରି ଦିନେ ରାସ୍ତାରେ ଶିଖିଲି ଚାଲି
ପଡ଼ିଶା ଘରକୁ ଗଲେ ଧରୁଥିଲି ହାତ
ଦେଖି ଯା, ତୋ'ବାଟରେ ଚାଲି ଆଜି
ଜୀବନର ଅପରାହ୍ନେ ନିର୍ଜନତା ସହିତ ମୁଁ କେଉଁକାଳୁ
ହେଲିଣି ସଂଗାତ ।
ତୁ ମୋତେ ଶିଖାଇଥିଲୁ 'ପ୍ରାର୍ଥନା' ହିଁ ଶେଷକଥା
ପ୍ରାର୍ଥନାର ଶକ୍ତି କେତେ
ଆଜି ମୁଁ ପରୀକ୍ଷା କରିବି
ନିଃସର୍ତ୍ତ ଭାବରେ ମୁଁ ଅରପିବି ଆପଣାକୁ
ସେହି ଦିବ୍ୟସତ୍ତା ପାଖେ,
ଦେଖାଯାଉ କେତେ ଦିନେ ମୁଁ ତାର କରୁଣା ପାଇବି ।

◆ ◆

# ଯୋଗସୂତ୍ର

ମୁଁ ଯଦି ପାଦତଳ ମାଟି ଛାଡ଼ିଦେବି
ତୁମେ ସବୁ ଡ଼େଣା ଥକିଗଲା ପରେ
କୁଆଡ଼େ ଫେରିବ ?
ମୁଁ ଯଦି ଉଡ଼ିବୁଲିବି ଆଉ ପାଞ୍ଚଟା
ମଣିଷଙ୍କ ଭଳି
ହାଲୁକା ଶିମିଳି ତୁଳା ପରାୟେ
ପବନର ଅନୁକୂଳେ, ସତ କହ
ତୁମକୁ କି ମଉଜ ଲାଗିବ !
ମୁଁ ଜାଣେ ଭୂମିକା ମୋ'ତୁମ ପାଇଁ ଏତିକି ଯେ
ମୁଁ ଖାଲି ଯୋଗସୂତ୍ରଟିଏ
ଅଷାଢ଼ୁଆ ସୂତା ପରି
ତୁମ ସହ ମାଟିର ସମ୍ପର୍କଟିକୁ ମଜବୁତ କରିଦିଏ
ସପନରେ ତୁମ ପାଇଁ ଏକାଧିକ

କଳପନା ଜାଲ ବୁଣୁଥାଏ ।

ଆକାଶର ବିଶାଳତା ପାଖେ

ଆଖି ମୋର କ୍ଳାନ୍ତ ଅବସନ୍ନ

ମାଟି ତ ଜାବୁଡ଼ି ଧରି କହିହେବ ମୋର ବୋଲି

ଆକାଶରେ କିଏ କେବେ

ଚିରଦିନ ବାନ୍ଧିଛି କି ଘର ?

ଆକାଶ କାହାରି ନୁହେଁ, ନୀଳ ପ୍ରତାରଣାଟିଏ

ତଥାପି ଆକାଶୀ ନିଶାଟା କେବେ

ଜୀବନକୁ କରଇ ଅସ୍ଥିର ।

ଯେଉଁଠାରେ ମାଟିର ମୁଗ୍‌ଧ ନିମନ୍ତ୍ରଣ

ଆତ୍ମୀୟତାର ଅୟୁତ ପ୍ଳାବନ

ସେଇଠି ମୁଁ ଅନାଇଁଛି ତୁମେ ସବୁ ଫେରୁଥିବ

କ୍ଳାନ୍ତ ହାତ ପାଦ ନେଇ, ବସିଯିବ ଗଛଛାଇ ତଳେ

ଟିକିଏ ହାଲିଆ ମାରି

ଅନାଇଁବ ଊର୍ଦ୍ଧ୍ୱମୁଖୀ ହୋଇ

ଇଚ୍ଛା ଯଦି ପୁଣି ଥରେ ଉଡ଼ିପାର

ଗୁଡ଼ି ଭଳି, ମନା ନାହିଁ

ମୋ'ହାତରେ ଯିବ କିନ୍ତୁ ଲଟେଇଟି ଦେଇ ।

◆ ◆

# ତୋ ଲାଗି କବିତାଟିଏ

ତୁ ଗୋଟେ ଅନୁଭବ

ଗୋଟେ ବାସ୍ନା,

ଗୋଟେ ଅଧାଲେଖା କବିତାର

ଅଧାବୁଝା ମନଛୁଆଁ ଧାଡ଼ି -

ତୁ ଗୋଟେ ଶିହରଣ, ଉଚ୍ଚାକାଙ୍କ୍ଷା

ବେଳେ ବେଳେ ତୁ ବି ପାଲଟିଯାଉ

ମୋ'ପାଇଁକି ବୁଢ଼ୀମା'

ଅସରନ୍ତି କାହାଣୀର ପେଡ଼ି ।

କେବେ ଲାଗେ ବାନ୍ଧବୀଟିଏ ତୁ

କେବେ ଲାଗେ ତୁ ମୋର ବନ୍ଧୁ ଅବା ଗୁରୁ -;

କେବେ ଲାଗେ ଗୁଲୁଗୁଲୁ କଥା କହୁଥିବା

ମୋର କୁନିଝିଅ

ତୁ ବି ପାଲଟିଯାଉ

ଅଜାଣତେ, ମୋ ପାଇଁ ବାଞ୍ଛା କଳ୍ପତରୁ ।
ତୋର ବିଶ୍ୱରୂପ ଦେଖି କାବୁଷ୍ଟ ପାଲଟି ଯାଏ
ମୁଁ କେବେ ସବ୍ୟଶାଚୀ ପରି;
ପୁଣି ବି ମନେ ହୁଏ ତୁ ମୋର ପରିଚିତ ପୃଥିବୀଟି
ମୁଁ ଖାଲି ବାୟୁସ୍ତର ଭଳି ତୋତେ
ଅଜାଣତେ ରହିଅଛି ଘେରି ।
କେବେ ମନେହେଉ ତୁ ନିହାତି ଅବୁଝାଭଳି
କେବେ ଲାଗେ ଜନ୍ମପୂର୍ବରୁ ଖାଲିତୁ
ମୋତେ ନୁହେଁ ଚାରିପାଖ ସଭିଙ୍କୁ ଜାଣିଛୁ -
ଜାଣିଛୁବି ମଣିଷର ଛଳନା ଆଟୋପ
ନିକିତି ତଉଲି ତୁ ଭଲମନ୍ଦ
ନିଜଭଳି ନିଜେ ମାପିଅଛୁ ।
ତୁ କେବେ ଲାଗୁମୋତେ ଆଶାର ସୁବର୍ଣ୍ଣତରୀ
କେବେଲାଗୁ ସୁଅମୁହଁ ଗଛଛିଣ୍ଡା କଅଁଳ ପତର
ତୁହି ମୋ'ଜୀବନର ଶବ୍ଦକୋଷ
ମୋ'ଜୀବନର ସାହାରାର
କୃଶକାୟା ନୀଳନଦୀ ଧାର ।

◆ ◆

## ଉତ୍ତର ପୁରୁଷ

ତୋ ମୁହଁପରି କାହା ମୁହଁ ଦିଶିଲାନି
ଏତେ ଜନଗହଳି ଭିତରେ
ଅନେକ ସ୍ମିତ ହସରେ ଭିଜିଗଲି,
ତା ଭିତରୁ ଖୋଜୁଥିଲି ତୋ'
ହସରୁ ମୁଠାଏ
ଯାହା ମୋ'ଜୀବନର ଶୂନ୍ୟସ୍ଥାନ
ଭରି ଦେଇପାରେ ।
ତୁ କିବା ମୋ'ମନରେ
ଜଳୁଥିବା ବିପ୍ଳବର ବହ୍ନିଶିଖା
ଆଶାର ଫସଲ ମୋର
ଅବା ମୋର ସମାହିତ ଇଚ୍ଛାର ସହର ?

ମୁଁ ଯାହା କହି ପାରିନି
ଜିଭ ତ ଦେଇଛି କାଟି
ପିତୃରଣ ଗୁରୁରଣ ପରିଶୋଧ ପାଇଁ
ତୁ ସବୁ କହିଦେବୁ ନିର୍ବିକାରେ
ମୁଁ ଜାଣିଛି, ମୋ ନିବୁଜ ଜୀବନର ଝରକା ତୁ
ସବୁବେଳେ ଆଲୁଅର,ପବନର
ଜୀବନର ବାର୍ତ୍ତା ଆଣୁ ବହି ।
ତୋ'ମୁହଁ ସତରେ କ'ଣ ସବୁଠୁ ସୁନ୍ଦର !
ଟୋପା ଟୋପା ଆତ୍ମୀୟତା
ଝରେ ମୋର ମନକୁ ଭିଜାଇ
ତୋ'ପରି ଆଉ ଜଣେ କିଏ ଅଛି
ଯିଏ ମୋତେ ବୁଝିପାରେ ଏତେ ବେଶୀ
ଆଜିଯାଏ ମୁଁ କାହିଁକି ଭାବି ପାରିନାହିଁ ?
କୋଳାହଳମୟ ଏହି
ସନ୍ ସନ୍ ନୀରବତା ଡେଇଁ
ତୁ କ'ଣ ଆସିବୁ କି
ମୋ କବିତା ପଢ଼ିବାକୁ
ତୁ କ'ଣ ଯିବୁ ଏଇ ସ୍ୱେଦସିକ୍ତ
କପାଳକୁ ଛୁଇଁ ।

◆ ◆

# ଉପହାର

ମୁଁ କ'ଣ ଦେଇ ପାରିବି ତୋତେ ?
ଅଣ୍ଟିଖାଲି
ସାତ ଗଣ୍ଠିଦେଇ ଯାହା ବାନ୍ଧିଥିଲି
ପଣତ କାନିରେ
ଫିଟି ଯାଇଛି କେଉଁ ଦିନ
ମୋ ଅଜାଣତରେ ।
କିଛି ବିବର୍ଣ୍ଣ ଅନୁଭୂତି
''କିଛି ଉଦାସୀ ସଙ୍ଗୀତ
କିଛି ଭାଷାହୀନ ଯନ୍ତ୍ରଣା ବ୍ୟତୀତ
ମୋର ଆଉ ନିଜର କ'ଣ ଅଛି ଯେ ?
ଠାକୁରଙ୍କ ପାଖରେ ହାତ ପାତିଲେ ତ
ଖୋଲା ହାତରେ ଝରି ପଡୁଛି
ଭକ୍ତମାନଙ୍କର ଦାନ କିଛି ଖୁଚୁରା

କିଏ ବଡ଼, ଭକ୍ତ ନା ଭଗବାନ ?
କିଏ ସେ କରୁଛି ଦୟା ??
ନିଜ ବ୍ୟକ୍ତିତ୍ୱ ପାଇଁକି ସଚେତନ ମଣିଷଟି
ଆଉ ଜଣେ ମଣିଷ ପାଖରେ
ସତେ କ'ଣ ହାତ ପାତିପାରେ ?
ତୁ ମୋତେ ବୁଝିଛୁତ ?
କିଏ ଜାଣେ ?
ପଢ଼ିନୁ କି ନେସି ହୋଇ ଯାଇଥିବା ମୋ ଭବିତବ୍ୟ ରେଖା
ନାଁ ବଦଳାଇ ଦେଲେ ମୁଁ ସମଧର୍ମା ଯେକୌଣସି ମଣିଷରେ
ରୂପାନ୍ତରିତ ହୋଇଯାଏ
''ନିଜ ସହ ନିଜେ ଲଢ଼ି
କ୍ଷତାକ୍ତ ହେଲା ପରେ ବି
ସଂଗ୍ରାମ ଭୂଇଁକି ପିଠି ଦେଖାଇନି ବୋଲି
ନିଜେ ନିଜେ ବାହାବା ନିଏ ।
ମୋ'ଚାରିକଡ଼େ ଘୂରି ତୁ କ'ଣ ସାରିଦେବୁ
ବିଶ୍ୱ ପରିକ୍ରମା
ଲେଖିଯିବୁ ଗଣପତିଙ୍କ ପରାୟେ ମହାକାବ୍ୟ
ଜୀବନ ରହସ୍ୟ ମୋର
ଯାହା ଖାଲି ଅସରନ୍ତି ଅଭିଜ୍ଞତା
ସିନ୍ଦୁରରେ ମଖା
ତୁ କ'ଣ ଆଉ ପାଞ୍ଚ ଜଣଙ୍କ ପରି
ମାଗିବୁ ହାତୀ କି ଘୋଡ଼ା ?
ଫୁଙ୍କି ଦେବୁ କୌଶଳରେ
ବହୁଦିନୁ ନିରବିତ ପେଁ କାଳି ମୋର
ତୁ କ'ଣ ମାଗିବୁ କି ଉଡ଼ାଜାହାଜ ଟିକେଟ
ସାଂସାରିକ ପ୍ରାପ୍ତି କିଛି ତୋ'ପାଇଁ କି ମୂଲ୍ୟହୀନ

''ତୁ ମୋର ବିଶ୍ୱାସର ଭରସାର ବତୀଘର
ଭଙ୍ଗାରୁଜା ରାଇଜରେ ଏକମାତ୍ର
ଶାନ୍ତିର କୁଟୀର ।
ଯାହା ମୋର ଚିନ୍ତାର ପରିଧି
ବହୁଦିନୁ ପରିଚିତ
ମୁଁ ଭାବେ ଯାହା ମୋର ଅତି ଆପଣାର
ତୋ ପାଇଁ କେବଳ ଗୋଟେ ପ୍ରତିକ୍ରିୟା
ତୁ ପରା ମୋ ନିରବ ବିପ୍ଳବର
ରକ୍ତାକ୍ଷରା ହସ୍ତାକ୍ଷର
ଆଗାମୀ ଶତାବ୍ଦୀକୁ ମୁଁ
ଗଭୀର ଆସ୍ଥା ସହିତ
ଟେକିଦିଏ ହାତରେ ତୋହର ।
କ୍ଷତାକ୍ତ ସୈନିକର ଉପହାର
ଅସମ୍ମାନ କରିବୁନି
ନୂତନ ଆଶା ଆଲୋକ ତୋ'ପାଖରେ ଝଲମଲ
ଶତାବ୍ଦୀ ପାଇଁକି ତାହା ଭରସାର ସ୍ଥଳ
ବିଶ୍ୱାସ ମନ୍ତ୍ରରେ ତୁ ଅଭିମନ୍ତ୍ରିତ କରିବୁ
ତାପ ଦଗ୍ଧ ଧରଣୀକୁ
ତୋ'ପାଇଁକି ଏତିକି ଶୁଭେଚ୍ଛା ମୋର, ତୁ ପରା
ମୋ'କାମନା ପୂରଣ ଲଗ୍ନେ ଦେବତାର
ଆଶୀର୍ବାଦ ଧାର ।

◆ ◆

# ତୋତେ ଛାଡ଼ିବାକୁ ହେବ !

ମୋ'ନିଶ୍ୱାସରେ ତୁ
ମୋ ବିଶ୍ୱାସରେ ତୁ
ତୋତେ ଛାଡ଼ିବା ଏ ଜୀବନରେ ସମ୍ଭବ ନୁହେଁ
କହିଦେ, କାହିଁକି ବା ମିଛରେ କାନ୍ଦିବି ମୁଁ
ସାତ ପର ଲୋକମାନେ
କରୁଥିବେ ଆହା ଚୁ ଚୁ ।
ମୋ'ପଣତ କାନି ସିନା ଦେଢ଼ହାତି
ମୋ'ମାଆ ପଣତ କାନି ବ୍ୟାପିଛି
ଏ ଚଉଦ ଭୁବନ,
ସେ ମୋତେ ସିନା ଶାସନ କରିବ
ତୋର ଶତ ତ୍ରୁଟି କିନ୍ତୁ କ୍ଷମା କରିଦେବ
ତୋ'ଦେହରୁ ଧୂଳି ଝାଡ଼ିଦେବ
ମୁଁ ଜାଣିଛି,

ତୋ'ପାଇଁ ତା ବୁକୁତଳେ
ପାତିଛି ସେ ଅନନ୍ୟ ଆସନ ।
ମୁଁ ସିନା ପଳିତକେଶା ଶ୍ଳଥକର୍ମା
ଜୀବନ ଅପରାହ୍ନରେ
କ୍ଷୟମାଣ ଦୀପଶିଖାଟିଏ
ଯିଏ ଗର୍ଭକୁ ଜଳି ଆସୁଛି
ଦିନୁ ଦିନ ଭଜୁଛି ଅନ୍ଧାର
ମୋ ଜନନୀ ଷୋଡ଼ଶୀ ଭୁବନମୟୀ
ଚିରନ୍ତନୀ ବିବେକ ପ୍ରତିମା
ଯାହାଲାଗି ଖେଳଘର
ଏ ସାରା ସଂସାର
ତୋତେ ଚାହିଁଥିବ ସିଏ ଅମୃତ ନୟନେ
ସମତୁଲ କରିଦେବ ସକଳ ଭାବନା ତୋର
ଅଜସ୍ର ବିଶ୍ୱାସ ଫୁଲ ତୋ ବୁକୁରେ ଫୁଟାଇବ
ଏତିକି କାମନା ମୋର ଶୟନେ ସ୍ୱପନେ ।
ତୁ ମୋର କଳ୍ପନାର କେନ୍ଦ୍ରବିନ୍ଦୁ
ମୋ'ଆଶାର ମୃଦୁ ସ୍ରୋତସ୍ୱିନୀ
ମୋ'ତପସ୍ୟାର ସିଦ୍ଧି, ବିବେକର ପ୍ରତିନିଧି
ଜୀବନ ଶୂନ୍ୟଥାଳର ନିର୍ମାଲ୍ୟ କଣିକା ତୁ
ମୋ'ଭାଗ୍ୟର ଚିରନ୍ତନ ମେଘଢ଼ଙ୍କା ଆକାଶରେ
ତୁ ପରା ସ୍ଥିର ସୌଦାମିନୀ
ତୋତେ ଛାଡ଼ିବାର ନାହିଁ ଏ ଜନ୍ମରେ
ତୋତେ ଝୁରି ଲୁହ ଢ଼ାଳିବାର ନାହିଁ
ବେଳ ଅବେଳରେ
ତାଠୁଁ ଭଲ ନିଜକୁ ବୁଝାଇ ଦେବା
ବିଶାଳ ବିଶ୍ୱର ଯେଉଁ କୋଣରେ ତୁ ଅଛୁ
ଅଛୁ ମୋର ଜନନୀ କୋଳରେ ।

◆ ◆

# ଆଉ ବା କ'ଣ ଲୋଡ଼ା

କେମିତି ଜାଣିଲୁ ତୁ
ସବୁଠାରୁ ଦରକାରୀ ଏ ଦରବଟି ଛୁଞ୍ଚିସୂତା
ବାକୀତକ ଦିନ ଯିବ ଗୁନ୍ଥିବାରେ
ଅତୀତର ଶତସ୍ମୃତି ମାଳି
ଛିଣ୍ଡା ପଣତ କାନିରେ ତାଳି ପକାଇବି
ଜାଣିଲୁ କେମିତି ଅବା
ଆସିଯାଏ ସବୁରଙ୍ଗ ଛାଡ଼ିବାର ପାଳି,
ତୋର ଏଇ ଛୁଞ୍ଚିଟିକୁ ସାବଧାନରେ ରଖିବି
କାଳେ କେବେ ଫୋଡ଼ି ହୋଇଯିବ,
କାହା ଅହଂକାରର ବେଲୁନ୍ ମୋ'ଅଜାଣତେ
କେମିତି ବୁଝାଇଦେଲୁ ସତର୍କତା ବଂଚିବାର ମୂଳକଥା
ଏତେ ସହଜରେ,
ଏତେବେଳ ଯାଏ ମୋର ହୋଇନି ପରତେ ।

ମୋ'ଅଜାଣତେ ଦିନେ ଚୋରି ହୋଇଯାଇଥିଲା
ମୋ ଅତୀତ, ଜାଣୁ ଜାଣୁ ଜାଳି ଦେଲି ବର୍ତ୍ତମାନ
ଖାଲି ଟିକେ ଆଶ୍ୱାସନା ଲାଗି
କେଉଁଦିଗେ ଭବିଷ୍ୟତ ?
କାହାପାଖକୁ ଯିବି ମୁଁ ଭବିଷ୍ୟତ ପାଇଁ କିନ୍ତୁ
ନିଶ୍ଚିନ୍ତତା, ସ୍ୱପ୍ନ ଅବା ବିଶ୍ୱାସ ମୁଁ ମାଗି ।
ବାବୁ, ଛୁଞ୍ଚି ଦେଲୁ ସୂତା ଦେଲୁ
କେମିତି ଭୁଲିଲୁ ଅବା ଦେବାପାଇଁ ଚାଳିଶା ଚଷମା
କାହାକୁ ଧାର ମାଗିବି, ତୋଭଳି ବୁଦ୍ଧିମାନ୍ ପିଲାଥାଇ
କହିଦେ, ମୁଁ କାହିଁକି ବୁଝିନାଇଁ ଜମା
ଚାଳିଶା ଚଷମା ମୋର ଖୁବ୍ ଲୋଡ଼ା
ଅବଶିଷ୍ଟ ଆୟୁଷର ମୁହଁ ଦେଖିବାକୁ
ଛୁଞ୍ଚିସୂତା ଧରି ଯେବେ ସବୁ ଅନୁଭୂତି ଦେଇ
ଗୁନ୍ଥିବି ଗଜରାହାର ଜୀବନର ସାୟାହ୍ନରେ
ତୁ'ମୋର ହାତଧରି ନେଇଯିବୁ
ମନେ ରଖିଥା, ସେଇ ମନ୍ଦିର ବେଢ଼ାକୁ

◆ ◆

# ସମୟ

ସମୟ ଯଦିବା କେବେ ଥକିଯିବ
ଅଟକିବ ପବନର ଗତି
ଚାଲିବନି ଘଣ୍ଟାକଣ୍ଟା
ନିଷ୍ପ୍ରଭ ହେବନି ଆଖି
ହେବନାହିଁ ଋତୁର ପରିବର୍ତ୍ତନ
ଦିନ ଅବା ରାତି
କାହିଁକି ବା ଅଜ୍ଞାତବାସ କରିବେ
ଯାଜ୍ଞସେନୀ, କେଉଁ ବେଣୀବନ୍ଧନର ପାଇଁ
ଦିନଦଣ୍ଡ ଗଣି ଗଣି ଊର୍ଦ୍ଧ୍ୱ ଶ୍ୱାସେ
ଦ୍ୱିତୀୟ ପାଣ୍ଡବ ଭୀମ ରହିଥିବେ ଚାହିଁ ।
ସମୟ ଅଟକି ଗଲେ
ପରୀକ୍ଷାଫଳ ପାଇଁକି
ଅକାରଣେ ଗଣ୍ଡଗୋଳ

କାହିଁକି ବା ହେବ ।

ଆଗ ଧାଡ଼ିରେ ବସିବା ଗୌରବ କଥାଟେ ବୋଲି

କେଉଁ ଶିଶୁ ଅଯଥାରେ ଭାବିବ ବା

କେଉଁ ପ୍ରୌଢ଼ ଆସନ ଖଣ୍ଡକ ପାଇଁ

ଅଯଥାରେ ଧନ୍ଦି ହେଉଥିବ ?

ସମୟ ଅଟକି ଗଲେ

ପେନ୍‌ସନ ଚିନ୍ତା ନାହିଁ

ଚିନ୍ତା ନାହିଁ ଯୌତୁକ ବା ଝିଅ ବାହାଘର ।

ସମୟ ଅଟକି ଗଲେ କିବା ଲୋଡ଼ା

ଧସ୍ତା ଧସ୍ତି ଗାଡ଼ି ମଟରରେ

ପୈତୃକ ପ୍ରାଣଟା ପାଇଁ ଯେତେ ଚିନ୍ତା ଅକାରଣ

ଆରାମ୍‌ରେ ବଂଚିହେବ ଇଚ୍ଛା ମତେ

ସମୟ ଚୋରାଇବନି ଦମ୍ଭ ଦର୍ପଗର୍ବ ଅହଂକାର ।

ସତେ କି ଅଟକିଯିବ ଏ ସମୟ

ରାଜଲକ୍ଷ୍ମୀ ଦିବ୍ୟ ଅନ୍ତଃପୁରେ

ଅଟକି ଯାଉ ସେ କିଛି ମନା ନାହିଁ

ନ ଆସୁ କେବେହେଁ ସିଏ ଅଭାବୀର ମଳିନ ସଂସାରେ ।

◆ ◆

# କାଳ : ନିରବଧି

ଜାଣିଥିଲି ପୋକ କାଟିଚାଲିଛନ୍ତି
ମୋ'ଛବି ବହିର ପୃଷ୍ଠାଗୁଡ଼ାକ
କେଉଁକାଳୁ ଟିକ୍ ଟିକ୍ କରି
ଜାଣିଥିଲି, ଖୋଲିଦେଲେ ଝଡ଼ିପଡ଼ିବ
ମୋର ଛୋଟ ଛୋଟ ଅହଂକାରର ପୃଷ୍ଠା
ଯାହାକୁ ମୁଁ ଗୋଟାସୁଦ୍ଧା ମୋର ବୋଲି
ଆଜିଯାଏ ରହିଛି ଆବୋରି
ଚକ୍ ଚକ୍ ମଲାଟ ପଡ଼ିଛି
ସୁନେଲି ଅକ୍ଷରରେ
ଲେଖା ହୋଇଛି, ମୋ ନାଁ
ବହି ସାମ୍ନାରେ
ଶେଷ ପୃଷ୍ଠା ରଂଗୀନ୍ ଛବିଟି
ଆଜି ମଧ୍ୟ ରହିଛି ଅକ୍ଷତ
ଘର ପୋଡ଼ିରୁ କୁଟାଖିଏ ପରି
ସେଇ ମୋର ପରିଚିତି, ମୋ ବିସ୍ତୃତି
ଗଭୀରତା, ସେଇ ମୋର ପାଦଟୀକା
ସେଇଥିରେ ବଂଧା ଅଛି
ମୋର ଭବିଷ୍ୟତ ।
ଆଜି କିନ୍ତୁ ହଠାତ୍ ଦେଖୁଛି
ସେ ପୃଷ୍ଠାଟି କେଉଁଦିନୁ ଗଲାଣି ଉଭେଇ
ରଙ୍ଗ ନାହିଁ, ବାସ୍ନା ନାହିଁ
ଆଉ କିଆଁ ସାଇତିବି

ସେ ବହି ମୁଁ ତାଲାଚାବି ଦେଇ ?
ଜାଣିଥିଲି ପୋକଖିଆ ବହି
ମୋର ଜୀବନଟା ସାରା
ତଥାପି ବି ଭାବିଥିଲି
ସବାଶେଷ ପୃଷ୍ଠା ମୋର
ସକଳ ଅନୁଭୂତିର ଗନ୍ତାଘର
ମୋ'ନିଜସ୍ୱ
ସେଇ ମୋର ଆବେଗର
ସସାଗରା ଧରା ।
ମୁଁ ବୋଧେ ପାରିଲିନି
ତା'ସୁରକ୍ଷା କରି
କେଉଁ ଛଟକରେ ଆହା
ଅଭେଦ୍ୟ କବଚ କୁଣ୍ଡଳ ମୋର
ହରିନେଲା ମହାକାଳ
ଏବେ ଖାଲି ହତାଶାର ଦୀର୍ଘ ଶ୍ୱାସ
ଅବଶିଷ୍ଟ ଜୀବନଟା ସାରା ।
ଜାଣିଥିଲି ଖାଲି ହାତେ ଯିବାପାଇଁ
ହେବ ବୋଲି
ଜାଣି ନଥିଲି ତ କେବେ
ଗଲାଦିନ ଲିଭିଯିବ ସବୁତକ
ହସ୍ତରେଖା ମୋର
ଏବେ ଆଉ ଚେନାଏ ଆକାଶ
ମୋର ନୁହେଁ ଗୋଟାସୁଦ୍ଧା
ମହାକାଳ ସାଗରରେ ମିଶିଯାଏ
ଚାହୁଁ ଚାହୁଁ ମୋ'ଛବି ମୋ'ସମ୍ଭାବନା
ପାହାଡ଼ ଜଙ୍ଗଲ ଟପି
ଆସିଥିବା ତଟିନୀଟି
ସାଗରେ ପାଶୋରିଯାଏ
ଯେମିତି ପ୍ରକୃତି ତା'ର ।

• •

# ଅପେକ୍ଷା ବିଶ୍ରାମ ପାଇଁ

ସମ୍ଭାବନାଠାରୁ ବୁଝାମଣା ପର୍ଯ୍ୟନ୍ତ ବାଟତ ଜୀବନ
ଫଟା ପୋଷାକର ସିଲେଇ ଲୁଚାଇ ରଖି
ନୂଆ ବୋଲି ବାହାଦୂରୀ ମାରିବା ତ ଜୀବନ
ଘରପୋଡ଼ି ଯାଉଥିବା ବେଳେ
ନିଆଁ ପୋଉଁଛି ବୋଲି ପଡ଼ୋଶୀଙ୍କୁ କହିବା ହିଁ
ଜୀବନର କ୍ଷୁଦ୍ରତମ ସାମାନ୍ୟ କଥନ
କେବେ ତୁମକୁ କମ୍ବଳଟେ ମାଗିଥିଲି ବୋଲି
ଗ୍ରୀଷ୍ମ ଛୁଟିରେ ମୋତେ କମ୍ବଳଟେ ଉପହାର ଦେଲଯେ
ମୁଁ ତାକୁ ଘୋଡ଼େଇ ହେବି ନାଁ ସାଇତି ଦେବି
ଆଗାମୀ ଶୀତ ଯାଏଁ ?
କେବେ ମୁଠାଏ ନିରବତା ମାଗିଥିଲି ବୋଲି
ତୁମେ ମୋ କାନ ତାବଦା କରିଦେଲ
ହାଉଜାଉ ଶବ୍ଦ ଭିତରେ ମୋ'ପୃଥିବୀ

ନିସ୍ତବ୍ଧ ପାଲଟି ଗଲା ଆହା
ମୁଁ ବା କାହା କାମରେ ଲାଗିଲି ?
ମାଗିଥିଲି ମୁଣ୍ଡ ଉପରକୁ ଛାତ
ଭୁଲିଗଲି ମାଗିବାକୁ ଚାରିପାଖେ କାନ୍ଥ ଆଉ ଚଉକାଠ
ସାମନାକୁ ଢାଉଁଳି କବାଟ
ସମୁଦ୍ର କୂଳିଆ ବାଆ ମୋତେ ଖାଲି ପରିହାସ କରେ
ଉଡ଼ିଯାଏ ଓଢ଼ଣା ମଥା ଉପରୁ
ମୁଁ ସିନା ଅପାରଗ, କାନ୍ଥ କବାଟ ନଥିବା ଛାଇତଳ
ଘର ନୁହେଁ ବୋଲି ତୁମେ ବି ବୁଝିଲ ନାହିଁ
କହିବି କାହାକୁ ଏବେ
ଗୋବର ଲେସା କାନ୍ଥରେ ଦିଶେ ମୋର ଜୀବନର
ଅକଳନ୍ତି ଫାଟ ।
ପିତୃ ଅର୍ଜିତ ସମ୍ପତ୍ତି ବୁଣିଦେଲି ଖୁଚୁରାରେ
କାଲେ ମୋର ଏ ହାତରେ ପୂରିଯିବ ଥଳି
ରାସ୍ତାକଡ଼ ଛକମୁଣ୍ଡେ ଅନାଉଛି ବାରମ୍ବାର
ଏତେ କ୍ଲାନ୍ତି ପରେ କାଲେ ପଡ଼ିଯିବ
ମୋ ବିଶ୍ରାମ ପାଳି
ତୁମେ କୁହ କେବେ ଗୋଟେ ଗପ କହିଥିଲି
ବୋଲି, ଖାଲି ଗପ ଶୁଣିବାର ଫରମାସ
ମୋ'ପାଖରେ ଏ ଜୀବନ ଯାକ
ସବୁରି ମନ ଲାଖି କଣ ହୋଇପାରେ ଜଣେ କେବେ
ପିଠି କିବା ବୁଝିପାରେ ପେଟ କଥା
ଅନ୍ଧାର ବୁଝିବ କାହିଁ
କେତେ ଦୁଃଖେ ଜଳୁଛି ଆଲୋକ ।

◆ ◆

# ସାୟାହ୍ନ

ଜୀବନର ମଧ୍ୟାହ୍ନରେ ପାର୍ବତୀ-ତପସ୍ୟା କରି
ତୁ ଅବା କ'ଣ ପାଇଲୁ ?
ଝୁରିବା ଝରିବା କିବା କପାଳ ଲିଖନ ତୋର
ଠାକୁର ପଥର ହେଲେ
ମିଛେ ମଥା କୋଡ଼ି ସିନା ଲହୁ ଝରାଇଲୁ ।
ସ୍ୱପ୍ନ ସବୁ ହଜିଗଲା ସକାଳ କୁହୁଡ଼ି ପରି
ଧୂଆଁଳିଆ ଆକାଶ ବୁକୁରେ
ଝରିଗଲା ଅନେକ ସରାଗ ରଙ୍ଗ
ମନବଂଶୀ ବାଜିଲାନି ପ୍ରୀତିର ସେ ଅନାହତ ସୁରେ-
ସମୁଦ୍ରର ଲୁଣିପାଣି ପିଇ
ଅକତା ହୋଇଲୁ ସିନା
ଅକାରଣେ ଜୀବନ ଶେଫାଳି ତୋର ପଥେ ଗଲା ଝରି
ତୋ'ମନ୍ଦିର ଶୂନ୍ୟ କରି ଦେବତା ଉଭାଇ ଗଲେ
ପଛକୁ ତ ଥରେ ହେଲେ ଚାହିଁଲେନି ଫେରି ?
କି ପାଇଲୁ ଜୀବନରେ କହ ?
ହସ କାନ୍ଦ ଏକାକାର କରି
ପାଷାଣ ହୃଦୟ ନେଇ ଖରା ତାତି ବର୍ଷା ଶୀତ ସହି

ବସନ୍ତ ଆସିଲା ନାହିଁ
ତୋ'ଦୁଆରେ କ'ଣ ପାଇଁ
ଥରଟିଏ କରାଘାତ କରି
କର୍ତ୍ତବ୍ୟ ପାହାଡ଼ ତଳେ ଚାପି ହୋଇ
ଫେଣ୍ଟାଫେଣ୍ଟି ଅଶ୍ରୁ ଓ ଆବେଗ ନେଇ
ପାହାଚ ତଳ ଘାସ ତୁ ଶେଥା ହେଲୁ ମିଛେ
ଆଜି ମଲେ କାଲିକୁ ଦି'ଦିନ
ଏ ସଂସାରରେ ଯିବ ନାହିଁ କେହି କାହା ପଛେ-
ତ୍ୟାଗକୁ ନିଜର କରି ଖାଲି ସିନା
ବିଞ୍ଚି ହୋଇଗଲୁ
ପତ୍ର ପୁଷ୍ପଫଳ ସବୁ ଶାସକର
ମାଳି ତୁ, ତାଲୁ ଝାଳ ତଳିମାରେ ମାରି ମାରି
ପିଠି କୁଜା କଲୁ ।
ତୋ ପାଇଁ ମୋ ମନ ତଳେ
ମମତାର ଫଲ୍‌ଗୁ ସ୍ରୋତ
ହାତ କିନ୍ତୁ ପାଉନାହିଁ
ଯେତେ ମୁଁ ବଢ଼ାଏ
ଦୁଇକୂଳ ଖାଇ ଆଜି ସମ୍ପର୍କରେ ରକ୍ତନଦୀ
ମହାବେଗେ କାଳସିନ୍ଧୁ ସ୍ରୋତ ମୁଖେ ଧାଏଁ ।
ପାରୁନାହିଁ ନିଜକୁ ବୁଝାଇ
କିଏ ଅଛି ତୋ ବିନା କହ
ଭଲମନ୍ଦ ଲାଭ କ୍ଷତି ଗଣିତ ଉତ୍ତର
ସରଳରେ ଦେବ ମୋତେ କହି ?
ମନ୍ଦିର ବେଢ଼ାର ମୁଁ ତ ପ୍ରାଣହୀନ ନିର୍ଜୀବ ପଥର
ପୂଜାଥାଳି ହାତେ ନେଇ ଗଲାବେଳେ ସିଂହଦ୍ୱାର ଡେଇଁ
ଭୁଲିବୁନି, ଥରେ ହେଲେ ଝାଡ଼ି ଦେଇ
ଯିବୁ ତୋ ପୟର ।

◆ ◆

# ଅକସ୍ମାତ୍ ଦେଖା ହେଲେ

କେଉଁକାଳୁ ବାଟଭାଙ୍ଗି ଆସିଲିଣି
ହିସାବ ରଖିନି
ଆଜି ଯେତେ ବେକଭାଙ୍ଗି ଚାହିଁଲେ ବି
ଦିଶୁନାହିଁ ପଛ ଛକ
ତଥାପି ବି ତୁମ ହାତ ଧରି ଚାଲିଥିବା
ଦିନମାନଙ୍କର ସ୍ମୃତି, ଆନମନା କରେ ମୋତେ
ସମୟର ସ୍ରୋତ ଯେବେ
ମୋ'ମନରେ ବହଇ ଉଜାଣି ।
ହାତଛାଡ଼ି ଦେଇଗଲ ଯେ
କେତେ ଆଉ ଠିଆ ହୋଇଥାଆନ୍ତି
ହାଉଜାଉ ଗହଳି ଛକରେ
ଅନେକ ପ୍ରଶ୍ନିଳ ଆଖି ଘୂରୁଥିଲା
ପଢ଼ିବାକୁ ସବୁଠାରୁ ମୂଲ୍ୟବାନ୍

ଢଉମୁଦା ଇଫାପାରେ
ତୁମ ପାଖୁ ଲେଖି ସାଇତି ରଖିଥିବା
ମୋ'ଥାକ ଥାକ ଚିଠି
ସେଥିପାଇଁ ଭୁଲ ବୁଝିବନି ମୋତେ
ସମୟ ସୁଅରେ ଭାସି
ଅସହାୟ କୁଟାଖିଏ
ଆଜି ଆସି ଲାଖିଛି ଏଇଠି ।
ଅନେକ ସମୟ ଭୟେ ଜଡ଼ସଡ଼ ହୋଇ
ଆଖି ବୁଜିଲା ଉପରେ
ମଥା ଉପରେ ପଡ଼ିଲା କେଇ ଟୋପା
ସୁବାସିତ ଜଳ
ଆଖି ଆଗେ ଦିଶିଗଲା ସବୁଜ ଘାସଗାଲିଚା
ସେଇଠି ବଂଚି ଶିଖିଚି,
ସବୁ ଅଭିମାନତକ ଉଜେଇଁ ଦେଇଛି
ସମୟ ନଈର ସୁଏ
ତୁମେ ଜାଣ ସମ୍ମାନ ନଥିବା ଯାଏ
ଅଭିମାନେ ଅବା କେଉଁ ଫଳ
ହେ ମୋର ସ୍ୱପ୍ନର ସିଦ୍ଧାର୍ଥ,
କେଉଁ ନିରଂଜନା ତୀର ତୁମ ଲକ୍ଷ୍ୟ
କହିଦିଅ ପିତୃରାଜ୍ୟ କପିଳବାସ୍ତୁରୁ
ତାହା ପାଖ ଅବା ଦୂର
ଆଉ କିଛି ଲୋଡ଼ା ନାହିଁ
ଯଦି କେବେ ଅକସ୍ମାତ୍ ଦେଖାହେବ
ମୌନତାର ଛଳନା କରିବ ନାହିଁ
ଶୁଣାଇବ,
ଗୈରିକ ଅନୁଭୂତିର
କ୍ରମିକ କାହାଣୀ କିଛି
ଶୁଣାଇବ, ରହସ୍ୟଜଡ଼ିତ ତୁମ
ପ୍ରାପ୍ତିର ଖବର ।।

◆ ◆

# ପ୍ରତିଶ୍ରୁତି

ଶୋଷୀ କ'ଣ ବୁଝିଥାଏ
ତା'ଜୀବନ ରକ୍ଷାକାରୀ ଜଳ ମୁନ୍ଦେ
କେଉଁଠୁ ଆସିଛି
ବଢ଼ିଲା ନଈରୁ ବା ଦରଶୁଖିଲା କୂଅରୁ
ଛେଦା ପାଣି,
ବୁଝିବାକୁ ଡର କାହିଁ ?
ବଂଚିବା ତ ବଡ଼ କଥା
ବାକି ସବୁ ପଛରେ ମୁରୁଛି ।
ଗିଲାସରେ ଅଧେ ପାଣି ଅଛି ବୋଲି
ଦୁଃଖ କାହିଁକି କରୁଛୁ ବାୟାଣୀ ?
ଶୋଷ ତ ଯାଉଛି ମେଣ୍ଟି
ଖାଲି ଗିଲାସ ଗଡୁଥିବା ଦିନ ଦୁଃଖ
ତୁ କ'ଣ ପାଶୋରି ଗଲୁଣି ।

ମୁଣ୍ଡ ଉପରେ ପାଟଛତା ନାହିଁ
ଭାସିଗଲା କ'ଣ ଯେ ?
ନାଁ ନଜଣା ଗଛର ଛାଇଅଛି
ଅଛି ପୁଣି ନାନା ଜାତି
ପକ୍ଷୀଙ୍କର ମଧୁର କାକଳି
ଆଉ କ'ଣ ପାଇଥାନ୍ତୁ ଭାବୁଛୁ
ତୋ'ଭାଗ୍ୟ ପାଇଁ ତ ଆଜି
ଅନେକେ ଈର୍ଷା କାତର
ଶାଣିତ ପରିହାସ ତୋ
ବିଶ୍ୱାସର କାଚକେନ୍ଦୁ ପାଣିତକ
ସଂନ୍ଦେହରେ କରିଦିଏ ଗୋଳି ।
ଆସୁଛି ଶରତକାଳ ନ ହୁଅ ଅଥୟ
ନିର୍ମଳ ହୋଇବ ନଦୀ ଜଳ ଧାର
ଅହମିକାର ପ୍ରାଚୀର ଭାଂଗିଯିବ
ପରିଚ୍ଛନ୍ନ ଜଳେ ନିଜେ ଦେଖିବୁ ତୋ'ପ୍ରତିବିମ୍ବ
ତୁଟିଯିବ ଅକାରଣ ଭୟ ।।

◆ ◆

# ମୋ ଘର

ଘର ! ତୁ ମୋତେ ଅଭିଜ୍ଞ କଲୁ
ହାତେମାପି ଆଗୁଳେ ଚାଲିବା ଲାଗି ବିବଶ କରିଲୁ
ଗତକାଲି ମୋ'ହାତରେ ଗଢ଼ା ହୋଇ
ଝାଳନାଳ ଏକାକାର କରି ମୋତେ
ଚୁପ୍‌ଚାପ୍ କେମିତି ବା ମଜା ଦେଖୁଥିଲୁ ?
ଦିନ ଥିଲା, ଆଙ୍ଗୁଠି ଧରି ପିଲାଏ ଚାଲୁଥିଲେ ବାଟ ।
ଆଜି ସଭିଏଁ ଦୂରମଣିଷ ତତେ ବି ପାଉନି ହାତ
ମନେଅଛି ତୋ'ପାଇଁ ଦିନେ
ପସନ୍ଦ ମୁଁ କରିଥିଲି ମନଲାଖି ଝାଉଁଳି କବାଟ ।
ତୁ ମୋତେ ଭୁଲାଇଥିଲୁ ଅତୀତକୁ
ଆଜି ପାଶୋରାଇ ଦେ ବର୍ତ୍ତମାନ ମୋର
ସବୁ ବିବଶତା ଆଉ ହାରଜିତ ସହ
ତୁ ମୋତେ ଆପଣାର କରି ନେ

ଆଉ କାହିଁ ତୋ ବିନା ଅନ୍ୟ ଗତି ମୋର
ତୁ ଯଦି ଫିଙ୍ଗି ଦେବୁ, ମୁଁ ପରା ଅଭ୍ୟାସ ବଶତଃ
ପୁଣି ତୋ'ସହ ଲେସି ହୋଇଯିବି,
କୁଟାଖିଏ ମୋର ନୁହେଁ ଜାଣୁ ଜାଣୁ
ପୁଣି ଥରେ ଅଣ୍ଡାରେ ଔଷଧ ଘଷି
ମାର୍ଗଶୀର ଗୁରୁବାରେ ତୋ'ଅଗଣା କାନ୍ଥରେ ଝୋଟି ଲେଖୁଥିବି ।
ତୋ'ସମୟ ମୋ'ସମୟ ସୀମା ଏକା ନୁହେଁ
ଜାଣୁ ଜାଣୁ ପୋଛୁଥିବି ଦଶଥର
ଝାଡୁଥିବି ତୋ'ଦେହରୁ ଧୂଳି
ପିଲାଏ କରିବେ ପର, ତା'ବି ଜାଣିଛି ମୁଁ
ସବୁଦିନେ ସହୁଥିବି ତୋ'ଅଳି ଅର୍ଦ୍ଦଳି ।
ଚାଳରେ ମୁଁ ବସାଇ ଦେବିନି କୁଆ
କାଟିବନି ତୋ'କାନ୍ଥରେ ଅନାବନା ଗାର
ତୁ'ମୋର ଗୌରବର ପ୍ରତିଲିପି
ଇଟା ବାଲି ସିମେଣ୍ଟ କଂକ୍ରିଟ୍ ନୁହେଁ
ଗୋଟାସୁଦ୍ଧା ଆପଣାର ତୁ ମୋର 'ଘର' ।

◆ ◆

# ଘାସଟିଏ ପାହାଡ଼ ତଳର

ତୁମେ ପଥର ଚାପି ଦେଇଛ
ଘାସ ଗଛଟି ଉପରେ
ଛାଟି ଦେଇଅଛି କଣ୍ଟା କୌଶଳରେ
ନିତିଦିନିଆ ବାଟରେ
ଟେକା ଫିଙ୍ଗିଛ କୂଅରେ ପଡ଼ିଥିବା ବେଙ୍ଗକୁ
ଗୋଡ଼ ଖସି ଗଲାବେଳେ ହସିଛ ବି
ସାତ ପର ଦୂରର ମଣିଷ ଭଳି କେଡ଼େ ନିର୍ବିକାରେ ।
ତୁମେ ଭୋକ ବେଳେ ପିଠି ଆଉଁଷିଛ ସିନା
ପେଟ କଥା ବୁଝିନ ତ
ବସିନ ଅନାଇଁ କେବେ ମୋ'ଆସିବା ବାଟ
ବାହାବା ଦେଇ ଖାଲି ତାଳି ମାରିଅଛ ସିନା
ଦେଖିନ କେମିତି ମୋର ଗୋଇଠିରୁ ରକ୍ତ ଝରେ
ତୃଷାରେ କ୍ଲାନ୍ତିରେ ଫାଟେ କେମିତି ମୋ'ଓଠ ।

ବାଡ଼ର ଗଛରେ ତୁମେ ପାଣି ଢ଼ାଳ
ବନ୍ଧୁଙ୍କର ପ୍ରଶଂସାରେ ପୋତି ହୋଇଯାଅ
କିନ୍ତୁ ହାୟ, କେନାଟିଏ ମନ ଇଚ୍ଛା ବଢ଼ିଗଲେ
ତୁମରି ଆଖିରେ ପଡ଼େ ସବା ଆଗ
କତୁରୀଟେ ଧରି ତାକୁ ମନ ମାଫି କାଟି ଦେଉଥାଅ ।
ସାବାସ ଦେଉଛି ତୁମକୁ ଓ ତୁମପରି
ସାଆନ୍ତିଆ ମନ ଥିବା ସବୁ ମଣିଷଙ୍କୁ
ଥରେ ଦେଖ ପାହାଚ଼ ତଳର ଘାସ
ହାରିଲାଣି ସବୁ ରଙ୍ଗ ତାର
ବେଙ୍ଗଡ କୂଅରେ ପଡ଼ି ଛଟପଟ,
ଟେକା ମାରିବାରେ କିବା ବାହାଦୂରୀ
ଦୁଆରେ କଣ୍ଟା ଛାଟିବା ତୁମ ପରି ପାରିବାର ମଣିଷକୁ
ସତେ କଣ ଦିଶୁଛି ସୁନ୍ଦର ।।

• •

# ଝଡ଼ର କପୋତ

ଉରୁଭଙ୍ଗଉର ବିଷର୍ଣ୍ଣ ମୂହୂର୍ତ୍ତରେ
ଦୁର୍ଯ୍ୟୋଧନ କ'ଣ ଭାବୁଥିଲା ?
ହସ୍ତିନାର ରାଜ-ସିଂହାସନ ?
ଗାନ୍ଧାରୀର ମର୍ମଭେଦୀ ଆର୍ତ୍ତନାଦ ??
ଭାନୁମତୀର ବେଦନା ବିଧୁରମୂର୍ତ୍ତି ???
ଅବା ଲକ୍ଷ୍ମଣ କୁମାରର ମୃତ ଦେହ
ତାକୁ ବେଶି ବିବ୍ରତ କରୁଥିଲା ।
ବିଦାୟର ସନ୍ ସନ୍ ନୀରବତା
ଝରା ପତ୍ରର କାରୁଣ୍ୟ ଭିତରେ
ସିଦ୍ଧାର୍ଥ କ'ଣ ପାଇଁ ଭୁଲିଗଲା
ଶିଶୁପୁତ୍ର ରାହୁଲର ମାୟା
ଆଉ ଗୋପାର କାରୁଣ୍ୟ ?
କେଉଁ ପ୍ରାପ୍ତିର ପ୍ରାଣ-ପ୍ରାଚୁର୍ଯ୍ୟରେ

ତାର ଅନ୍ତର ଝଲମଲ କରିଥିଲା
ନିରଂଜନା ତୀରେ ?
ତୁମେ ଆଜି ଭୁଲିଯାଅ ଅତୀତର ଜୀର୍ଣ୍ଣସ୍ମୃତି
ସବୁତକ ପୁରୁଣା ଚିଠି ଜଳାଇ
ଚାହା ଅବା କଫିକରି ପିଅ
ଅତୀତର ଫସିଲ ଉପରେ ଆଗାମୀର ଇମାରତ ତୋଳି
ଅନନ୍ତ ମାନବାତ୍ମାର ଜୟକାର ଗାଅ
ତୁମେ ହୁଅ ବେଗମାନ ଜ୍ୟୋତିଷ୍ମାନ ।
ସିଦ୍ଧାର୍ଥର ଅବିଚଳତା ନେଇ
ତୁମେ ସବୁ ଭୁଲିଯାଅ,
ସମ୍ମାନ ତ ଚିରନ୍ତନ ପ୍ରାପ୍ୟ ତବ
ହେ ମାନଗୋବିନ୍ଦ,
ତୁମେ କି ସାଜିପାରିବ କ୍ଳୀବ ବୃହନ୍ନଳା ?
କପିଳବାସ୍ତୁରୁ ତୁମେ ନିରଞ୍ଜନା ତୀର ଖୋଜି ଯାଅ
ପଛକୁ ଚାହିଁନି ଫେରି, ସାଧନାରେ ସିଦ୍ଧ ଲାଭ କରି
ଦୁନିଆଁକୁ ଆଲୋକର ଶୁଭବାର୍ତ୍ତା ଦିଅ ।

◆ ◆

# ପରିଣତି

ମହମ ପରି ତରଳି ଝରିଗଲି । ପୌଷର ପତ୍ର ଭଳି
ବତାସରେ ଉଡ଼ିଗଲି ଲକ୍ଷ୍ୟହୀନ ହୋଇ
ସମୁଦ୍ରରେ ମିଶିଗଲେ ସରୁଆ ନଈର ଧାର
ମିଠାପାଣି ଖୋଜିବାରେ ଲାଭ କିଛିନାହିଁ ।
ଆଗକୁ ଚାଲିବା ନିଜ କ୍ଳାନ୍ତ ପାଦ ଠେଲି
ଦରବୁଜା ଆଖିପତା ଜୋର୍ କରିଖୋଲିଧରି
ଚିହ୍ନୁଥିବା ପଥ । କାତରେ ଚାହିଁବା ସାର,
କେଉଁଦିନ ହେବ ପୁଣି : ନବକଳେବର ?
ଜୀବନର ବଡ଼ଦାଣ୍ଡେ ସଜା ହେବ ନନ୍ଦିଘୋଷ ରଥ ।
ମଉଳା ଫୁଲର ବ୍ୟଥା କିଏ ସେ ବୁଝିବ କହ
ନୀଡ଼ହଜା ବିହଙ୍ଗ କାକଳି ଅବା କାହା ମନ ଦେବ ତରଳାଇ
ସାର ଖାଲି ସୋରିଷ ଭଳି ମୁଠା ମୁଠା ବୁଣି ହୋଇଯିବା
ଆଉ ସେଇ ଓଲଟ ବୃକ୍ଷର 'ଲୋଟଣୀପାରା'କୁ
ବସିଥିବା ଅନାଇଁ ଅନାଇଁ ।।
ତା'ର ଗୋଲ ନୀଳ ଆଖିରେ ଦିଶୁଥିବ
ବିଂଚିଥିବା ସୋରିଷର ଦାନା ।
ଜୀବନର ଅଣୁ ପରମାଣୁ
ଏକାକାର ହୋଇଯିବ :
ସେଇ ଚିର ଉପ୍‌ସିତ ମୁହୂର୍ତ୍ତେ
ଇଡ଼ିଯିବା ପାଣିର ବି
ଜୀବନ ସାର୍ଥକ ହେବ
ପୂରିଯିବ ସଂଚିତ କାମନା ।।

◆ ◆

# ସତତ ଆରୋହଣ

ପଛକୁ ଚାହିଁବା ମାନେ ହିଁ ତ ଗୋଡ଼ ଖସିଯିବା
ଫେରି ଚାହିଁବାର ଦିନ ହଜିଯାଏ, ବଞ୍ଚିବାର
ନିତ୍ୟ ନୂତନ ସାମାନ୍ୟ କଥାନ ଭିତରେ
ଅନୁଭୂତି କନ୍ୟା କୁମାରୀରେ
ଆସ ବନ୍ଧୁ - ନୂଆ ସୂର୍ଯ୍ୟ ଉଦୟ ଦେଖିବା -
ଲାଭ କ'ଣ ? ଘାଣ୍ଟୁଥିବା ଅଳିଆ ଅରମା
ମାପୁଥିବା ଜୀବନର କେତେ ଖାଲଖମା
କୁଞ୍ଚିକାଠି କାନିରୁ ଫିଟାଇ
ସିନ୍ଦୁକ ଖୋଲି ଗଣିବା କେତେ କ୍ଷତି
କେତେ ଲାଭ ଜମା !
ଜନ୍ମଠାରୁ ମୃତ୍ୟୁଯାଏ କ୍ଷୀଣ ସୂତାଟିଏ
ସେଇ ତ ଜୀବନ
ଅସାବଧାନତା ପାଇଁ ଯେଉଁଥିରେ

ବାରମ୍ବାର ଗଣ୍ଡି ପଡ଼ିଯାଏ -
ଅସୁବିଧା କେବଳ ଏତିକି
ଅନୁଭୂତି ବୋଝମାନେ ଭାରୀ ହୋଇଯାନ୍ତି
ଖର୍ବାକାର ହୋଇଯାଏ
ଆରୋହୀ ବ୍ୟକ୍ତିତ୍ୱଟିଏ
ନିଶ୍ବାସର ପବନ ବି ସାଫଲ୍ୟର ଉଚ୍ଚତମ
ଶୃଙ୍ଗରେ ଅଭାବ
ଚାଲି ଚାଲି ଥକି ଗଲେ
ଗଛନାହିଁ ଛାଇ ଟିକେ ନାହିଁ
ଯେଉଁଠି ମାରିବ ଥକ୍କା
ଦଣ୍ଡେ ହେଲେ ବିଶ୍ରାମ ସେ ନେବ -
ତଥାପି ଯାତ୍ରା ହିଁ ସତ୍ୟ
ଏକମାତ୍ର ଲକ୍ଷ୍ୟ ରଖି ସ୍ଥିର
କେବେ ହେଲେ ପଥ ସରିଯିବ
ପଥକ୍ଳାନ୍ତ ହଂସଟିକୁ
ମିଳିଯିବ ଯାତ୍ରା ଶେଷେ
ଇପ୍‌ସିତ ସେ ମାନସରୋବର -

◆ ◆

## ସର୍ବଂସହା

କେଉଁଦିନ ଛିଟିକି ପଡ଼ିଥିଲି
ଉତପ୍ତ ସୂର୍ଯ୍ୟର ଘୂର୍ଣନରୁ ବୋଲି
ଆଜିଯାଏଁ ଆନତ ବଦନା ମୁଁ
ଚୁପ୍‌ଚାପ୍ ନିରବ ନିର୍ବାକ୍ ।
ଆଜି ତୁମେ ମୋ'ଉପରେ ଗଢ଼ିଚାଲିଛ
ସଭ୍ୟତାର ଅଟ୍ଟାଳିକା, ମସ୍‌ଜିଦ୍, ମନ୍ଦିର, ଗୀର୍ଜା
ମୋ'ଗର୍ଭ ଚିରି ଚାଲିଛ ସ୍ୱାର୍ଥ ପାଇଁ
ଅର୍ଥ ପାଇଁ, ସମ୍ମାନ ପାଇଁ
ବାରମ୍ବାର ନିଷ୍ଠୁର ଭାବରେ ।
ତୁମେ କ'ଣ ଭୁଲି ଗଲଣି
ମୋ'ଭିତରେ ସେ ସୂର୍ଯ୍ୟର ଦାହିକା ଶକ୍ତି
ଆଜି ମଧ୍ୟ ସୁପ୍ତ,
ଆଜି ବି ଗୋଟେ ଅଟ୍ଟହାସରେ

ମୁଁ ଭାଙ୍ଗିଦେଇପାରେ ମୁହୂର୍ତ୍ତକରେ
ତୁମର ଯୁଗ ଯୁଗର ସଞ୍ଚିତ ଅଟ୍ଟାଳି
ଛିନ୍ନ ଭିନ୍ନ କରିଦେଇପାରେ ତୁମ ଘର ସାମନାର ବଗିଚା
ଆଉ ତୁମ ଘର ଭିତରର ବୁଝାମଣା
ଆଖି ପିଛୁଳାକେ
ତୁମେ ଅବୋଧ ହୃଦୟହୀନ, ତେଣୁ ସର୍ବଦା କ୍ଷମାର ଯୋଗ୍ୟ
ତଥାପି ଥରେ ଛୁଇଁ ଦେଖ
ଉତ୍ତାପ ଓ ଶୀତଳତା
କେମିତି ଏକ ସମୟରେ ତୁମ ମଞ୍ଜ ଥରାଇଦେବ,
ଆବେଗ ଓ ଅଭିଜ୍ଞତା
କେମିତି ତୁମକୁ ଧ୍ରୁବର ମାର୍ଗ ଦେଖାଇବ
ଯୁକ୍ତି ଆଉ ବିଶ୍ୱାସ
କେମିତି ତୁମ ଚଲାପଥକୁ ସୁରଭିତ କରିଦେବ
ତେବେ, ମୁଁ କ'ଣ ଆଶା କରିପାରେ
ତୁମେ ଶାବଳ ଖଣତିଧରି ମୋ'ଛାତି ଚିରିଲାବେଳେ
ଥରେ ପଚାରି ଦେବ
''ମାଆ, ତତେ କାଟୁନି ତ ?''

◆ ◆

# ପରୀକ୍ଷା

'ବିନା ପ୍ରସ୍ତୁତିରେ ପରୀକ୍ଷା ଦେଉଛି ଯେ ଦେଉଛି

ଶେଷ ଘଣ୍ଟା ବାଜୁନି କି ଲେଖି ବି ସରୁନି

ଯେତେ "ଅଥବା" ଲେଖିଲେ ବି

ମନକୁ ପାଉନି ଉତ୍ତର

ଆଉ କ'ଣ ଲେଖିବି ଭାବୁ ଭାବୁ

ଆଖିକୁ ଜାଲଜାଲୁଆ ଦିଶିଲାଣି

କାଗଜ ମାଗିବି କି ନାହିଁ ଚିନ୍ତାକଲାବେଳକୁ

ହାତ ଥରିଲାଣି, ଅଣ୍ଟା ଧରୁଛି

ତଥାପି ଘଣ୍ଟା ବାଜୁନି ।

ଏ ଯେଉଁ ବିରାଟ ଶୂନ୍ୟସ୍ଥାନ

ତାକୁ ପୂରଣ କରିବି କେମିତି ?

ଯେତେ ପୂର୍ଣ୍ଣ କଲେ ବି

ତା'ର ଦୈର୍ଘ୍ୟ ବଢୁଛି ସିନା

କମିଦାର ନାଁ ଗନ୍ଧ ନାହିଁ
ନିର୍ବାଚିତ ଯେଉଁ ଶବ୍ଦଟି
ତାକୁ ପୂରଣ କରିବାରେ
ସମର୍ଥ ହୋଇ ଥାଆନ୍ତା,
ସେ ଶବ୍ଦ ବି ହଜିଲାଣି
ଶବ୍ଦକୋଷରୁ କେଉଁଦିନଠାରୁ ।
ଶବ୍ଦମାନେ ଏବେ ନିଅଣ୍ଟ
ଅର୍ଥମାନେ ବାରମାସୀ ଚଢ଼େଇ
ପାଲଟିଲେଣି,
କ'ଣ ଲେଖିଲେ ମୁଁ କୃତକାର୍ଯ୍ୟ ହେବି ?
କେମିତି ଉତ୍ତର ଲୋଡ଼ା ନିର୍ଦ୍ଦିଷ୍ଟ ପ୍ରଶ୍ନ ପାଇଁକି
ମୁଁ ପାଶୋରିଗଲି କେମିତି ଯେ ?
ଯେତେ ସମସ୍ୟା ଲେଖିଲେ ବି
ଆହୁରି ବଳକା ରହେ
ଯେତେ ବର୍ଣ୍ଣନା କଲେ ବି
ଅନୁଭୂତିକୁ ରୂପ ଦେଇ ହୁଏନି ମନଲାଖି
ଆଉ ପ୍ରସ୍ତୁତ ହୋଇଥିଲେ
ଅଧିକା କ'ଣ ହୁଅନ୍ତା କେଜାଣି ?
ଜୀବନ ଏମିତି ବିତେ
କଲମରୁ କାଳି ଝରିବା ପରି
ଝରକଲମ ଲେଖିବା ସମୟ ବି
ପଛେ ରହିଲାଣି ।
କାହାକୁ ସନ୍ତୁଷ୍ଟ କରିବ ମୋର ଉତ୍ତର
ପରୀକ୍ଷକଙ୍କୁ ନା' ମୋତେ
ନା' ମୋର ପରିବେଶକୁ ?
ମୋ ତୁଣ୍ଡ ଖୋଲିଲେ ମୁଣ୍ଡ ରହିବନି

ସେଥିପାଇଁ, ମୌଖିକ ପରୀକ୍ଷା ନୁହେଁ
ଚିରଦିନ କଲମକୁ ଭରସା କରିଛି ।
ମୋ'ତୁଣ୍ଡ ଖୋଲିଲେ
ବୋମାଟିଏ ଫୁଟିଯିବ
ଉଚ୍ଛୁଡ଼ି ଯିବ ମୋର ସମ୍ଭାବ୍ୟ ପ୍ରଶ୍ନଉତ୍ତର
ଫଳ ପାଇଁ ଅପେକ୍ଷା କରିବା
ବୋକାମୀ ଜାଣି ବି
ପରୀକ୍ଷା ନ ସରୁଣୁ ମୁଁ କେଉଁ ଅଧୀରତା ନେଇ
ଫଳ ପାଇଁ ଅନାଇ ବସିଛି ।
କହୁଛ ତ, ମୁଁ ଖାଇ ପାରିବିନି ଫଳ
ସେଥିରେ ବା ଯାଏ ଆସେ କେତେ
ମୋ'ପିଲାଏ ଖାଇବେ ତ ?
କିଏ ହେଲେ ଜଣେ କହିବ
ସାରା ଜୀବନର ତପସ୍ୟାରେ ଜଣେ
ପୋତିଥିଲା ଗଛ
ଲହୁ ଲୁହ ଦେଇ ତାକୁ ବଞ୍ଚାଇ ବଢ଼ାଇଥିଲା
ଆଜି ଯାହା ଫୁଲଫଳ ଲଦି ହୋଇ
ପଥଶ୍ରାନ୍ତ ମଣିଷର ଆଶ୍ରୟ ହୋଇଛି
ସେଥିପାଇଁ ଆବେଗ ମୋ ସବୁଦିନେ
ସେଥିପାଇଁ ପ୍ରତିଦିନ
ନିର୍ଦ୍ଦିଷ୍ଟ ନିୟମ ମାନି
ଆଜିଯାଏ ପରୀକ୍ଷା ଦେଉଛି ।

◆ ◆

# ନୀରବତାର ସଙ୍ଗୀତ

ଆଜି ଯାଏ ଜାଣିଥିଲି ଏ ଜୀବନଟା ବ୍ୟତୀତ
ମୋର ଦୁନିଆରେ ଆଉ କିଛିନାହିଁ ।
ଆଜି ତୁମ ସହିତ ସାକ୍ଷାତ ହେବା ପରେ ହିଁ ଜାଣିଲି,
ଏ ଜୀବନ ବି ମୋର ନୁହେଁ, ତୁମର ଦାନ
ଏମିତି କି ଦାନ ଦେଇ ଯେ
କେବେ ଦିନେ ଦେଖିଲନି, ତୁମ ଦାନର
ବିନିଯୋଗ କେମିତି ହେଉଚି ?
କେବେ ପଚାରିଲନି, କେମିତି ବଞ୍ଚିଛି ମୁଁ
ତୁମ ଦାନର ପାତ୍ର ସାଜି,
ରାତିଦିନ ନଖାଇ ନଶୋଇ ।
ସବୁ ଅପବାଦ ବୋଝ ମଥାରେ ମୁଣ୍ଡାଇ
କେବେ ବୁଝିଲନି, ତୁମ ଦାନର
ସୁରକ୍ଷା ହାଇପାରୁଛି କି ନାଁ
କେମିତି ତେଲ କରେଇରେ ଜୀଅନ୍ତା ମାଛଭଳି
ଛଟପଟ ହେଉଛି ତୁମରି ମହାଦାନ
କରି ପାରୁନାହିଁ ଅବା ସହି ପାରୁନାହିଁ,
ଯେଣୁ ଦିନେ ପୂର୍ବପୁରୁଷଙ୍କ ପାଖେ
ନୀରବ ରହିବା ଲାଗି ଦେଇଛି ବଚନ ।

◆ ◆

# ସଂଜ୍ଞା

ଜୀବନକୁ ଯେତେ ଖେଳେଇ ଦେଖିଲି
ତଳେଇ ଦେଖିଲି ଯେତେ ଯବକାଚ ଦେଇ
ପରୀକ୍ଷାଗାରରେ ତାକୁ ଛୁରୀ କଇଁଚିରେ କାଟି
ତଥାପି ବି ଆଜିଯାଏଁ ତା'ସ୍ୱରୂପ
ଗୋଟା ସୁଦ୍ଧା ବୁଝିପାରି ନାହିଁ ।
କିଏ କହେ ଜୀବନଟା ଖେଳଘର
କିଏ କହେ ଜୀବନ ନାଟକ
ନଈ, ଝରଣା ଅଥବା ନୀଳ କଇଁ
କିଏ କହେ ସପ୍ତରଙ୍ଗୀ ଇନ୍ଦ୍ରଙ୍କ ଶାୟକ
କିଏ କହେ ବହିଟିଏ ଏ ଜୀବନ
ବେଳେ ବେଳେ ଅସ୍ପଷ୍ଟ ଅବୋଧ
ବନାନ ହୁଏନା ଶୁଦ୍ଧ,
ଯେତେ ମୁଖସ୍ଥ କଲେ ବି ମଧୁ ବର୍ଣ୍ଣବୋଧ

କିଏ ସେ ଚିହ୍ନିଛି ଏଠି ଜୀବନକୁ
ବୁଝିଛି ବା ଆଦ୍ୟଠାରୁ ପ୍ରାନ୍ତ
ବାଲ୍ୟ କୈଶୋର ଯୌବନ ବାର୍ଦ୍ଧକ୍ୟରେ ବିଖଣ୍ଡିତ
ଏ ଜୀବନ କି ବିଚିତ୍ର, କେତେ ପ୍ରାଣବନ୍ତ ତାର
ଦୃଷ୍ଟିର ଦିଗନ୍ତ ।
ଏ ଜୀବନେ କିଏ ସେ ଦେଇଛି କିସ
ପାଇଛି ବା କେଉଁ କଥା ଏଠି
ସବୁବେଳେ ଭୁଲଖାଲି କହୁଥାନ୍ତି କେତେଜଣ
ଆଉ କିଛି ବୋଝ ବୋହି ଅକାରଣ ଖଟୁଥାନ୍ତି ବେଠି ।
କିଛି ଲୋକ ଚାହିଁଥାନ୍ତି ବୁଢ଼ିଆଣୀ ଜାଲ ମେଲି
ପତଙ୍ଗ ଆକର୍ଷଣ ପାଇଁ,
ସମସ୍ତେ ଜାଣନ୍ତି କି ଅଢ଼େଇଦିନିଆ ଜୀବ
ଥରେ ଗଲେ ଫେରିବନି କେବେହେଲେ ସେଇବାଟ ଦେଇ ।
କାନ୍ଦିବାଟା ପଛା ବୋଲି ଭାବେ ଯିଏ
ହସିବାକୁ ପଡ଼େନି ବି ତାକୁ
ଦୁର୍ଲ୍ଲଭ ପଦାର୍ଥ ହସ, ହୃଦୟ ପ୍ରଶସ୍ତ କରେ
ହାଲୁକା କରଇ ବୁକୁ, ଯେତେବେଳେ ଥକିଯାଏ
ମଣିଷଟି, ସମୟର ଦୈର୍ଘ୍ୟ ମାପୁ ମାପୁ ।
ମଣିଷର କପାଳରେ ସମୟର ସ୍ୱୀକୃତି ହିଁ ଜୀବନ
ରୂପ ରଙ୍ଗ ନାହିଁ ତାର କିଛି
ଆମେ ଯା'କୁ ରଙ୍ଗ କହୁ, ସିଏ ଆମ ରଙ୍ଗୀନ୍ ଚଷମା
ଯିଏ ବୁଝିଗଲା ଯାହା
ସେଥିରେ କି ଯାଏ ଆସେ ଅଛି ।

◆ ◆

# ସଂପର୍କ

କିଏ ସେ କହି ପାରିବ ସମ୍ପର୍କର ସଂଜ୍ଞା କଣ ?
କ'ଣ ପାଇଁ ଆକାଶଟା ସବୁଦିନେ ନୀଳ
ଗାଈ କିଆଁ ହମ୍ବାରଡ଼ି ଦେଉଥାଏ ବାରମ୍ବାର
ହୋଇଗଲେ ଅଜାଣତେ ଗୋଠ ଫେରା ବେଳ
କିଏ ସେ ମାପୁଛି ଏଠି ମାଣ ଗଉଣି
ଅଥବା ମାପ ଫିତାଟିଏ ଧରି ସମ୍ପର୍କର
ଓଜନ ବା ଦୈର୍ଘ୍ୟ ପ୍ରସ୍ଥ କେତେ
କେତେ ଭାଙ୍ଗେ ଗଢ଼ିହୁଏ
ସମ୍ପର୍କର ବାଲିଘର
ବିଶ୍ୱାସର ସଉଧଟା ଧସିଯାଏ
ଅକସ୍ମାତ୍ କେଉଁ କଥା ସହଜରେ
ହୁଏନି ପରତେ ।
ସମ୍ପର୍କିତ ଗଢ଼ିଦିଏ ସେତୁଟିଏ

ଦୁଇକୂଳ ଖାଇ ଯେବେ ବଢ଼ିଉଠେ
ଜୀବନର ଜୁଆରିଆ ନଈ
ସମ୍ପର୍କ ପକାଇ ଦିଏ ଛିଣ୍ଡା ପଣତରେ ତାଳି
ଅଝଟିଆ ଶିଶୁ ଭଳି
ଡ଼ାକ ଦେଲେ ସମ୍ପର୍କ ହିଁ ଆସେ ଧାଇଁ ଧାଇଁ,
ନାହି ନାଡ଼ର ସମ୍ପର୍କ ତ
ଜୀବନର ପ୍ରଥମ ସମ୍ପର୍କ ଭାଷା
ମାଡ଼ିଯାଏ ଦିନେ ଯାହା ବାସ୍ନା ପରି
ଭୂମିରୁ ଆକାଶ
ସମ୍ପର୍କର ଡ଼ୋରି ଧରି ବାରମ୍ବାର ଓହ୍ଲାଏ
ଯେ ମରତକୁ,
ସିଏ ପରା ସମ୍ପର୍କର
ମଧୁରତମ ବିଭୂତି
ସିଏତ ଚିର ବାଞ୍ଛିତ ପରମ ପୁରୁଷ ।

◆ ◆

# ଭଲଦିନ

ଭଲଦିନ, ତେଇଶି ବା ପଚିଶ ଗଣ୍ଡା ତା'ଆୟୁଷ
ଯେଉଁଦିନ ସୂର୍ଯ୍ୟ ହେବ ଚିରଞ୍ଜିବୀ,
ଅନ୍ଧାର ଆସିବା ପାଇଁ କରିବନି ମନ -
ହାତେ ଧରି ଯୁଗଯୁଗର ବାଞ୍ଛିତ ଶୁଭଫଳ
ଭଲଦିନ ଆସିବକି ସମୁଦ୍ର ରଂଗରେ ରଂଙ୍ଗି
ଅବା ନାଇ ଆଖିରେ ତା'ମୋହିନୀ କଜଳ ।
ଯେଉଁଦିନ ରାସ୍ତାରେ ଦିଶିବନି
ଭିକାରୀର ଭୋକିଲା ଚେହେରା,
ଖଟିବନି ଖେଳିଲା ବୁଲିଲା ଶିଶୁ,
ମାଟିକାମ କରିବନି ଆସନ୍ନ ପ୍ରସବା ନାରୀ,
ଦେହ ଢାଙ୍କିବାକୁ ଥିବ ଲୁଗାଖଣ୍ଡେ :
ସେଦିନ କି ହୋଇଥିବ ଆଜିପରି ମେଘଢଙ୍କା ଖରା ।
ଭଲଦିନ କାମନାରେ ହଜିଗଲା ସାଧାରଣ ଦିନସବୁ

ଖସିଗଲା ଛୋଟ ଛୋଟ ଖୁସିତକ
ହାତମୁଠାରୁ ଯେମିତି ଖସିଯାଏ ବାଲି;
ଭଲଦିନ ଆସିଲାନି -
ଖବର ପଠାଇଲାନି ଶୁଭକାଉ ହାତେ
ଆଜି ଆସିବ ଅଥବା ଆସିବ ସେ କାଲି ।
ଆସୁଥିବ ଭଲଦିନ, ତା'ତଣ୍ଟିରେ ଲାଗୁଥିବ
ମୁଁ ତା'କୁ ପକାଉଛି ମନେ,
ଗଣୁଛି ନିଃଶ୍ୱାସମୋର କାନ୍ଥରେ ପକାଇ ଗାର
ତା'ଆସିବା ଦିନଗଣେ,
ଯଦି ଆସିଯିବ ସିଏ କେମିତି ଚିହ୍ନିବି ତା'କୁ
ଦେଖିନି ତ ତା'ସ୍ୱରୂପ ଦିନେ ।
କଥା ଦେଇ ନରଖିବା ତା'ସ୍ୱଭାବ ଗୁରୁଜନ କହିଥିଲେ,
ଆଜି ମୁଁ ବୁଝିଲିଣି ଖୁବ୍ ଭଲ କରି,
ତଥାପି ଆସିବ ଯଦି ସ୍ୱାଗତ କରିବ ତା'କୁ,
ଫୁଲ ପାଖୁଡ଼ା ବିଛାଇ ନେଇଯିବି ଘରେ ହାତଧରି;
ବଢ଼ାଇବି ସିନ୍ଦୁକର ଚାବିକାଠି ମୋ'ର -
କହିବି "ସମ୍ଭାଳ ସବୁ, ଅବା ନିଜହାତେ କରିଦିଅ ଦୂର ।"

◆ ◆

# ସ୍ଥିରଦୃଷ୍ଟି

କହିଥିଲି ନାଁ ଚାବି ହଜେଇବୁନି ବୋଲି

ଏତିକି ମନେ ରହୁନି ?

ତୋତେ ଓଲି କହିବି ନାଁ କହିବି ତୁ ନିପଟ ପାଗଳୀ ?

ଲୋକହସା ହେବା ଯାହାର କପାଳ ଲିଖନ

ସେ ଯଦି ଚାବିମାଳ କରି ପିନ୍ଧିବ

ତଥାପି ଖୋଲିବ ନାହିଁ

ଅଭିଳକ୍ଷିତ ସିନ୍ଦୁକ, ମିଳିବନି ଗୁପ୍ତଧନ ନକ୍ସା

ମୁଁ ଜାଣିଛି, ତଥାପି କାହିଁକି

ତୋତେ ପାଗଳୀ କହୁଛି କହ ?

ଜାଣିଛୁତ, ତୋ'ମୁହଁ ଦିଶେନାହିଁ

ଆଉ କାହାଭଳି -

ମୁଁ ଜାଣିଛି ଚାବି କଥାଟା ବାହାଦୂରୀ

ପଛପଟ ରାସ୍ତା ପରା ସବୁବେଳେ ଠିଆମେଲା ଏଠି

ତୁ ତ କୁଣ୍ଠିସ କରି କରି
ମେରୁହାଡ଼ ବଙ୍କାକରି ସାରିଲୁଣି
ପାଚେରୀ ଡ଼େଇଁବୁ କେମିତି ?
ଚେଷ୍ଟା କରି ଦେଖିଲୁ
କଥା କହିବା ଶକ୍ତି ତୁ ହଜେଇ ଦେଇନାହୁଁ ତ ?
ସାତପୁରୁଷି ସାଇତା ଧନତକ ଚୋର ନେଇଗଲାବେଳେ
'ଧାଇଁଆସ' ଡ଼ାକିବାକୁ
ଫିଟିବ ତ କୋଉ କାଳୁ ତାଲାଦିଆ ପାଟି ।
ଚାବି ତ ସଙ୍କେତ ମାତ୍ର
ତାଲା ଖାଲି ସାମାଜିକ ବିଧିର ବିଧାନ
ଶକୁନ୍ତଳା ହାତର ମୁଦ୍ରିକା ଚାବି
ହଜିଗଲେ ହଜିଯିବ, ରାଜରାଣୀ ହେବାସୁଖ
ରାଜଅନ୍ତଃପୁର ନୁହେଁ
ସାହା ହେବ କେବଳ ଅରଣ୍ୟ
ହଜେଇ ଦେଲୁଟି ଚାବି
ଲୋଭ ନଥିଲା ଯଦିବା
ରଖିଥିଲୁ କିଆଁ ତେବେ
ସାତଗଣ୍ଠି ଦେଇ ?
ଏତେ ଆନମନା ହେବା ତୋତେ କ'ଣ ସାଜେ ?
ତୁ ପରା ସାଗରକୁ ଦୃଷ୍ଟି ରଖି
ଏକମୁହାଁ ଧାଉଁଥିବା ବେଗବତୀ ନଈ !

◆ ◆

# ମୁକ୍ତିର ସ୍ୱାଦ

ସେଦିନ ତୁମ କଥା ମାନି ବ୍ୟାପିଗଲି
ମୋ ମୁହଁରେ ସବୁରି ମୁହଁର ଛାପା ଦିଶିଲା
ମୋ'ହସରେ ଭରିଗଲା ପରିବେଶ
ମୋ'କାନ୍ଦରେ ନଦୀବୁକେ
ଅଦିନରେ ବନ୍ୟା ଆସିଗଲା ।
ଆଜି କହୁଛ ସଙ୍କୁଚିତ ହେବି ବୋଲି
ତରଳ ବ୍ୟକ୍ତିତ୍ୱ ମୋର ନିର୍ଦ୍ଦିଷ୍ଟ ଆକୃତିହୀନ,
କେତେ ସଙ୍କୁଚିତ ହେବି ?
ତୁମେ ତ ସକଳ ଶକ୍ତିର ଉତ୍ସ
ପ୍ରଚଣ୍ଡ ଉତ୍ତାପରେ ଶୋଷିନିଅ ମୋତେ
ଗଛଝଡ଼ା ପତ୍ର ଭଳି ମୋତେ ଉଡ଼ାଇ ନିଅ
ଯେଉଁ ଦିଗକୁ ତୁମର ଇଚ୍ଛା
ହେଲେ ସଙ୍କୁଚିତ ହେବାକୁ କୁହନା

ମୁକ୍ତିର ପାହାଚ ଚଢ଼ା କିଛି ଶିଖୁଥିବା
ଜୀବନଟାକୁ ଗେଣ୍ଡାରେ ବଦଳାଇ ଦିଅନା ।
ଖୋଲା ପବନରେ ନିଶ୍ୱାସ ମାରିବାକୁ ଭଲପାଉଥିବା
ମଣିଷକୁ ବାତ୍ୟା ଦିଅ, କିନ୍ତୁ
ଅଣନିଶ୍ୱାସୀ କରି ଦିଅନା
ସାରା ପୃଥିବୀକୁ କୁଟୁମ୍ବ କରିବାକୁ ହାତ ବଢ଼େଇ ଥିବା
ମଣିଷକୁ ସବୁବେଳେ କୁହନା ସେ ଅପାରଗ
ନିସ୍ତେଜ ନିସଙ୍ଗ
ତା'ହାତ ନ ଧର ପଛେ
ତୁମ କଥାର କଟୁରୀରେ
ତାର ବାହୁ ଛେଦ କରନା
ତା'ସାମ୍ନାରେ ଠିଆହୁଅନା
ବାଟଛାଡ଼, ସୂର୍ଯ୍ୟର ଉତ୍ତାପ ନେଇ
ଡ଼େଣା ଝାଡ଼ିବାକୁ ଶିଖୁ
ଖଣ୍ଡିଉଡ଼ା ଦେଇ ଶିଖୁଥିବା ଚଢ଼େଇ
ତୁମେ ପରା ସକଳ
ବିଶ୍ୱର ନିୟନ୍ତକ
ଦେଖ ତୁମ ହେପାଜତରେ
ଅତି ସନ୍ତର୍ପଣରେ ବଢ଼ିଥିବା 'କୁଆଁଟିକୁ'
କେଉଁ ପଘାଛିଣା ଗାଈ
ତା'ଖୁରାତଳେ ଚକଟି ଦେଉନିତ ।

◆ ◆

# ମୁଁ ତୁମକୁ ମୁକ୍ତି ଦେଲି

ତୁମକୁ ମୁଁ ମୁକ୍ତି ଦେଲି ମୋର ଦାୟିତ୍ୱରୁ
ଏଇ ମୁହୂର୍ତ୍ତରୁ
କେଉଁ କାଳର ପୋରିହା ବର୍ଷାଖିଆ ଗଣ୍ଠି
ତୁମେ ଛିଣ୍ଡାଇବା ଆଗରୁ
ମୁଁ ଖୋଲିଦେଲି ଇଚ୍ଛାକରି
ଦୋଷ ଦେବନାହିଁ ମୋତେ ।
ଯଦି ପାର ଭୁଲିବ ମନରୁ ।
ତୁମକୁ ମୁଁ ମୁକ୍ତିଦେଲି ସବୁ ସଂକଳ୍ପରୁ
ଦିନେ କହିବିନି ତୁମେ ଅବିଚାରୀ ବୋଲି
ନିଜ ଦୁଃଖ ତ ବଳାବଳ ତୁମକୁ
କେତେ ଛେଚାକଟା ଖାଇବା
ତୁମ କପାଳ ଲିଖନ
ଯାଅ, ଆଜି ମୋ'ଠାରୁ ମୁକ୍ତିନେଇ

ମନଇଚ୍ଛା ଆସ ଥରେ ବୁଲି ।
ମୁଁ ତୁମକୁ ମୁକ୍ତିଦେଲି
ଆଉ ମୋର ମୁଣ୍ଡ ପିଟିବାର ନାହିଁ
ବା କ୍ଷମା ମାଗିବାର ନାହିଁ
ଖାଲି ଦେଖିବାକୁ ଅଛି
ତୁମ ବିଚାରର କିବା ଫଳାଫଳ
ବହୁତ କଷ୍ଟ ଦେଲଣି
ସହି ପାରିବିନି ବୋଲି ଲୁହ ଢ଼ାଳିବାର ନାହିଁ
କୁରୁ ସଭାତଳୁ ଯଦି ମୁକ୍ତି ନାହିଁ
ବହ୍ନିକନ୍ୟା ଦ୍ରୌପଦୀର
କାହିଁକି ଡ଼ାକିବି ମୁଁ ଯୁଗପରେ ଯୁଗ କହ
ବିଶ୍ୱାସରେ କାହିଁକି ବା
ସବୁଦିନ ପିଇବି ଗରଳ ?

◆ ◆

# ସୀମାରେଖା

ନିଜର ସୀମା ଜାଣିବାକୁ
ଆଉ କ'ଣ ବାକୀ ଅଛି ?
ସେଠି ପହଞ୍ଚିଲା ପରେ ତ
କ୍ଳାନ୍ତିରେ ଥକି ଯାଉଛି ପାଦ
ଆଖି ବୁଜି ହୋଇଯାଉଛି ମନକୁ ମନ
ତଥାପି ସୀମା ବାହାରକୁ
ହାତ ବଢ଼ାଇବାର ଆଗ୍ରହ
କାହିଁକି ଘାରୁଛି କେଜାଣି ?
ସୀମା ଭିତରେ ରହିବା ଅଭ୍ୟାସ କରି
ଅସୀମା ହେବୁରେ ତୁ କେମିତି ବାୟାଣୀ ?
ସେମିତି ହାତ ବଢ଼ାଉଥିବୁ
ଭାଂଗି ଯାଉଥିବୁ ନିଜ ଭିତରେ
ଖଣ୍ଡ ଖଣ୍ଡ ହୋଇ
ତୋର ସୀମାହୀନ ଦୃଷ୍ଟି ପଥରେ
ଘାରୁଥିବ ଉଆଁସୀ ଅନ୍ଧାର
ଦୀର୍ଘଶ୍ୱାସର ଶବ୍ଦ

ବିରକ୍ତ କରୁଥିବ ଅନ୍ୟମାନଙ୍କୁ
ଆଜିଯାଏ ଯେଉଁ ପାହି ଛୁଇଁବାର ନିଶାଥିଲା
ସେ ନିଶାରୁ ମୁକ୍ତ ହେଲେ
ତୁ' ପୁଣି ବଞ୍ଚିବୁ କେମିତି ?
କେହି ଦିନେ ଜାଣିଛି କି,
ତୁ କେମିତି ଠିଆ ହୋଇଛୁ
ତୋଫା ଆଲୁଅକୁ ପଛ କରି
ମୁଠା ମୁଠା ଅନ୍ଧାର ସାଉଁଟି,
କେହି ପଚାରିଛି କି, ତୁ ମୂକ ବଧିର ଅବା
ଅନାଗତ ଆଶଙ୍କାରେ
ଇଛାକରି ବୁଜିଅଛୁ ପାଟି ।
କେହି ବୁଝିଛିକି,
କ'ଣ ପାଇଁ ତୋ'ଛାତିରେ କାତେ ପାଣି
ତୋ'ଆଖିରେ ସମୁଦ୍ର ଲହଡ଼ି
ସବୁ ବୁଝି ସବୁ ଜାଣି
କ'ଣ ପାଇଁ ଛଳନା କରି ତୁ ମିଛେ
ସର୍ପବୋଲି ଜାଣୁ ଜାଣୁ ଭିଡୁଛୁ ଦଉଡ଼ି ।
ବାୟାଣୀରେ, ଅସୀମା ହେବାର ଆଶା
ତଥାପି ବି କିଆଁ ତୋତେ କରୁଛି ଉଚ୍ଚାଟ ?
ତୁ ତ ବୀଣାଟିଏ
ଅନାହତ ନାଦ ପାଇଁ ପ୍ରତୀକ୍ଷିତା
ଏତିକି କାମନା ମୋର,
ତୋର ସ୍ନିଗ୍ଧ ଅନୁଭୂତିନେଇ
ତୁ ନିଶ୍ଚେ ବାଛି ପାରିବୁ ନିଜପାଇଁ
ଆଲୋକ ପଖଳା ଏକ ମନଲାଖି ବାଟ ।

• •

# ସଂହତିର ମନ୍ତ୍ରସ୍ୱର

କେବଳ ଗୋଟିଏ କଥା
ମଣିଷ ଯଦି ମଣିଷ ହୋଇ ରହିବ
ତା'ପାଇଁ ଏକ ସଦ୍ଭାବନା ଲୋଡ଼ା ହେବ
ତା'ପାଇଁକି ଉଷର ଭୂଇଁରେ ଦିନେ
ଜାତି ଜାତି ସପନର ଫୁଲ ଫୁଟି ଯିବ ।
ସ୍ୱର୍ଗଠାରୁ ମାପି କେଇ ଅଙ୍ଗୁଳି ତଳେ
ନରକଠୁଁ ଟାଖଣ୍ଡେ ଉପରେ
ଉତ୍ଥାନ ପାଦ ପରାୟେ ତୋଳିଥିବ
ପାଦଟିଏ ଉର୍ଦ୍ଧ୍ୱମୁଖ ହୋଇ
ତେବେ ସିନା ଧରିବେ ତା'ଦୁଇ ହାତ
ସୁରୁଚି - ସୁନୀତି ଦୁଇ
ଜୀବନ ପାତ୍ର ଭରିବେ
ଧ୍ରୁବ ଆଉ ଉତ୍ତମ ତନୟ
ସଂହତିର ବୃକ୍ଷ ଯେବେ
ଫଳଭାରେ ପଡୁଥିବ ନଇଁ ।
ମଣିଷ ଚାହିଁବ ଯଦି ବାରୁଦ ଗନ୍ଧରେ
କେବେ ନେବନି ନିଶ୍ୱାସ
ଭରିଯିବ ଆଶା ଆନନ୍ଦର ସ୍ୱର
ଜୀବନର ପ୍ରତି ପାଦେ ଭରିଯିବ ଅଜସ୍ର ବିଶ୍ୱାସ ।

ମଣିଷ ଚାହିଁବ ଯଦି
ତୁଷାର ବୁକୁରେ ଶସ୍ୟ ଭରିଯିବ
ଭରିଯିବ ଯେତେ ସବୁ ଖାଲ ଖମା
ଅମ୍ରୀୟତା ମଧୁର ପରଶେ
କେଉଁ ଯୁଗ ପୁରୁଷର ଆତ୍ମଦାନ ବ୍ୟର୍ଥ ହେବ ନାହିଁ
'ତେନ ତ୍ୟକ୍ତେନ ଭୁଞ୍ଜିଥାଃ' ମହାମନ୍ତ୍ର
ଗୁଞ୍ଜରିବ ଏ ଭାରତ ବର୍ଷେ
ଗଙ୍ଗା ଆଉ କାବେରୀକୁ ଯାହାର,
ପିତୃ ପୁରୁଷ ଅଞ୍ଜଳିରେ ଭରି
ଆଜି ମଧ୍ୟ କରୁଛି ତର୍ପଣ
ନର୍ମଦା ଓ ସିନ୍ଧୁ ସ୍ମରି, ମନ୍ତ୍ରନୀରେ ସ୍ନାନ ସାରି
କରେ ଯିଏ ବାରମ୍ବାର ଅତୀତର
ବେଢ଼ା ପ୍ରଦକ୍ଷିଣ
ସେମିତି ମଣିଷ ଲୋଡ଼ା
ଭାବନାର ମୂଲ ଦେବ ଯିଏ
ଛୁଇଁ ଦେବ ଅନେକ ଉତ୍ତାପ ଭରି ଦକ୍ଷ କରେ
ଆଉ ଗୋଟେ ସମଧର୍ମୀ ମଣିଷର ଛାତି
ସେମିତି ମଣିଷଟିଏ କାହିଁ କହ
ଯାହା ଚାରିପଟେ ସନ୍ଦେହର ସାଞ୍ଜୁଟିଏ ନାହିଁ
ନାହିଁ କାହା ଛାତି ତଳେ
କିଛି ଘୃଣା ଆଉ କିଛି ଭୀତି ?
ମଣିଷ ଯଦି ମଣିଷ ରହିବ ବୋଲି
ଆଜି ଦିନେ ଶପଥ କରିବ
ଫିଟିଯିବ ବସୁଦେବ ହାତରୁ ପାଦରୁ ବେଡ଼ି
ତେଣିକି କଂସ ନିଧନ
ଖୁବ୍ ଶୀଘ୍ର ହୋଇବ ସମ୍ଭବ ।

◆ ◆

# ବିଳମ୍ବିତ ଲଗ୍ନ

ମୁଁ ଏଥର ହାତ ବଢ଼ାଇବି ପରମ ପ୍ରେମିକଟିକୁ
ସବୁ ମାନ ଅପମାନ ଦୂରେ ଫିଙ୍ଗିଦେଇ
ଚଞ୍ଚଳ ଆସିବ ବୋଲି, ହାତଠାରି ଡ଼ାକୁଥିବି
ସେ ଚାହିଁଲେ, ଲାଜକୁଳୀ ଲତାପରି,
ଅଧୀରରେ ପଡୁଥିବି ନଇଁ ।
ତୁମକୁ ମୁଁ ଚିହ୍ନିନିତ
ଏତେ ଗହଳି ଭିତରେ
ଦିନା କେତେ ସାଙ୍ଗ ହୋଇ ଚାଲିଥିଲେ ବାଟ
ତୁମକୁ ମୁଁ ଚିହ୍ନିନିତ
କେଉଁଦିନ ଝୁଣ୍ଟିପଡ଼ିଥିଲେ ତୁମେ
ହାତଧରି ଉଠାଉ ଦେଇନ
ଓଲଟି ଦେଇଛ ଗାଳି
ଅଯଥାରେ କରିଛ ଆକଟ ।

ଲୁହ ପୋଛିବାତ ଦୂର
ଏତେ ଆଶା ତୁମଠାରୁ ବୃଥା
ପାଖକୁ ଡ଼ାକୁଛ କିଆଁ
ମୁଁ ତ ତୁମର ନୁହେଁ
ଭୁଲିଯାଇଅଛି କେବେ
ତୁମ ସହ କାଟିଥିବା କ୍ଲାନ୍ତ ଦିନ
ଭୁଲିଅଛି ପାଣିରେ ସର ପକାଇ
ତୁମେ କହିଥିବା ସବୁ ମନଘେନା କଥା ।
ମୋର କିନ୍ତୁ ଅଭାବ କି ଅଭିଯୋଗ ନାହିଁ
ଏତିକି ମାଗୁଣି ମୋର
ହାଇ ପରେ ହାଇ ଆସେ
ମୋ'ଉପରେ ଅଯଥାରେ ଏତେ ବୋଝ ଲଦିଦିଅ ନାହିଁ ।
ମୁଁ ବଢ଼ାଇବି ହାତ ଆକାଶକୁ
ଦିନେ ହେଲେ ବର୍ଷିଯିବ
କେତେ ବୁନ୍ଦା ଆଶ୍ୱାସନା ଜଳ
ପରମ ପ୍ରେମିକ ମୋର ଅନାଇବ ଚରମ ଦୃପ୍ତିରେ ଥରେ
ଭରିଯିବ ଭିକ୍ଷାର୍ଥୀର ଶୂନ୍ୟଥାଳ
ଆଖି ହେବ ଆବେଗ ସଜଳ ।

◆ ◆

# ଯୁଦ୍ଧର ପୃଥିବୀ

ଆତଙ୍କଗ୍ରସ୍ତ ପୃଥିବୀ
ଜଳସ୍ଥଳ ଆକାଶରେ ଯୁଦ୍ଧ ଘନଘଟା
ମଣିଷ ଜୀବନ ଏଠି ହୀନିମାନ
ଊର୍ଦ୍ଧ୍ୱଶ୍ୱାସେ ବଂଚିବା ବାହାନା ଖାଲି,
ବିଧାତାର ମହାଦାନ ଜୀବନକୁ କରି ହଟହଟା ।
କ୍ଷମତାର କ୍ଷେପଣାସ୍ତ୍ର ଛାଇଯାଏ
ଅହଙ୍କାର ଗନ୍ଧେ ମିଶେ
ଅସ୍ୱସ୍ତିର ଶ୍ୱାସରୁଦ୍ଧ ବାରୁଦର ଗନ୍ଧ,
ନିଶ୍ୱସରେ ଯୁଦ୍ଧ ମିଶେ
ଭୟରେ ହୁଏନି ନିଦ
ଯୁଦ୍ଧ ହିଁ ଲୁଟି ନେଇଛି ସମସ୍ତ ସ୍ୱାଭାବିକତା,
ଦଳିଅଛି ସମୟର ଅନାହତ ଛନ୍ଦ ।
ଟି.ଭି. ପରଦାରେ ଦିଶେ ଯୁଦ୍ଧଛବି ।
ଯୁଦ୍ଧଘାରେ ଜନନୀ ଜଠରେ
ପରିବାରରେ ସମର ସମର, ବି ଆସେମ୍ବ୍ଲିରେ
ଖବରକାଗଜ ପୃଷ୍ଠା ଭରିଯାଏ
ଯୁଦ୍ଧ ଛବି ଯୁଦ୍ଧ ଖବରରେ ।
ଏତେ ବୁଦ୍ଧି, ଅଭିଜ୍ଞତା
ଶାସକର ମଣିଷ ପଣିଆ
କାହିଁଗଲା, କେବେ ଫେରିବ ସେ ଶାନ୍ତି
କପୋତ ଡେଣାରୁ ସବୁ ପର ଖସିଲାଣି
ଶାନ୍ତି କାହିଁ ମୁକ୍ତି କାହିଁ
ମୁକ୍ତର ତାଜା ନିଶ୍ୱାସ, କେଇଟା ଦିନ ଭିତରେ
ଏ ମଣିଷ ପାଶୋରିଗଲାଣି ।

◆ ◆

# କବିତାର ଜନ୍ମଲଗ୍ନ

କବିତାର ଜନ୍ମ ଯଦି ସୂର୍ଯ୍ୟ ଉଦୟର ଲଗ୍ନ
ମୋ'ଭିତରେ କୋଟି କୋଟି ସୂର୍ଯ୍ୟୋଦୟ
ଅନେକ ପ୍ରତୀକ୍ଷା ପରେ
ମୁକ୍ତିର ତପନ ଉଏଁ ମୋ ଭିତରେ
ମୁଁ ପାଲଟିଯାଏ ପ୍ରାର୍ଥନାର ସ୍ୱରଟିଏ
ଅତୀତରୁ ସମ୍ପର୍କ ତୋର କଟିଯାଏ
ଆପେ ଆପେ
ମୁଁ କେମିତିହୋଇଯାଏ ମୁହୂର୍ତ୍ତେ
ଦିବ୍ୟ ଭାବମଗ୍ନ,
ଆଶା ଆନନ୍ଦ ଆଉ ଅନନ୍ୟ ଅନୁଭୂତିର
ବେଦନା ମିଶ୍ରିତଏକ ଶିଶୁ ଜନ୍ମଲଗ୍ନେ
ଯଦି କବିତା ଭୂମିଷ୍ଠ ହୁଏ
ଫାଟିଯାଏ ବସୁନ୍ଧରା ନବାଗତ କୃଷ୍ଟିର ଆଗମନରେ

ମୋ'ଭିତରେ ସେହି ବେଦନାକ୍ତ ଲଗ୍ନଟି ତ
ଚିରଞ୍ଜିବୀ, ମୁଁ ବସୁନ୍ଧରା ଭିନ୍ନ ଅନ୍ୟ କିଛି କି ?
କବିତାର ଜନ୍ମ ଯଦି ଶରାହତ କ୍ରୌଞ୍ଚମିଥୁନ ଦର୍ଶନ
ଦୁଃଖରେ ଶୋକରେ, ଅସହାୟତାରେ
ସେ କବିର ରକ୍ତ ବିନ୍ଦୁ ମୋ ଧମନୀରେ
ମୋ ଅନ୍ତର ଭେଦିଯାଏ ପକ୍ଷୀର ତାଜା ରକ୍ତରେ ବାରମ୍ବାର
ରକ୍ତର କ୍ଷରଣ କେବେ ସରେ ନାହିଁ
ମୁଁ ନିଜକୁ ଆବିଷ୍କାର କରେ
ନାଁ ନଜଣା ରୋଗୀଟିର ବିଛଣା ଧାରରେ
କେଉଁ ଏକ ଅଜଣା ଆକର୍ଷଣରେ
କିଏ କହିପାରେ ?
କବିତା ପାଲଟିଯାଏ ଆଶାବାଡ଼ି, କେଉଁ କାଳର
ରୁଗ୍ଣରୁଗ୍ଣ ଜଖମର ଶୀତଳ ମଲମ
ଅଣନିଶ୍ୱାସୀ ଦଉଡ଼ରେ
ଊର୍ଦ୍ଧ୍ୱଶ୍ୱାସ ମଣିଷର, କବିତା ପାଲଟିଯାଏ ବଞ୍ଚିବାର ନାମ
ମୁଁ କେମିତି ଠିଆହୁଏ ଯୋଡ଼ ହସ୍ତେ
କବିତାର ଦାରୁବ୍ରହ୍ମ ବିରାଜିତ
କୋଟି କମ ସିଂହାସନ ତଳେ
କବିତାକୁ ଅନୁଭବିବାକୁ ଆଖିବୁଜେ
ସତ କହ ସତେ କ'ଣ କବିତାର ଶହେ ଆଠ ନାମ
ଯେଉଁ ନାମେ ଡ଼ାକିଲେ ବି
ବନ୍ଧୁପରି ସେ କ'ଣ 'ଓ' କରିପାରେ !

◆ ◆

## ପ୍ରକାଶିତ ପୁସ୍ତକ

| | | |
|---|---|---|
| ମମତାର ଉପପାଦ୍ୟ | - | (କବିତା ସଂକଳନ) |
| ନାଟକ, ନାଟ୍ୟକାର ଓ ନାଟକୀୟତା<br>ନାଟକ ପରଂପରା ଓ ପରିଭାଷା<br>ନାଟକର ନବ ମୂଲ୍ୟାୟନ<br>ନାଟକର ନବଦିଗନ୍ତ<br>ନାଟକ ବ୍ୟାପ୍ତି ଓ ଦୀପ୍ତି | - | (ନାଟ୍ୟ ସମାଲୋଚନା) |
| କବିତା ଆଲୋଚନାର କେତୋଟି ପାହାଚ | - | (କବିତା ସମାଲୋଚନା) |
| ନାୟିକା ନିଜ ଦର୍ପଣରେ | - | (ଫିଚର୍) |
| ସନ୍ଥକବି ଯଶୋବନ୍ତ ଦାସ | - | (ଜୀବନୀ) |
| ଗନ୍ଧଗଙ୍ଗା | - | (ସମ୍ପାଦନା) |
| ନାଟକ ସୀମା ଓ ସମ୍ଭାବନା | - | (ଯନ୍ତ୍ରସ୍ଥ) |



## ସଂଘମିତ୍ରା ମିଶ୍ର

ପିତା : ୰ ବଂଶୀଧର ମିଶ୍ର

ମାତା : ୰ ଶ୍ରୀମତୀ ଦେବୀ

ସ୍ୱାମୀ : ଡ଼ାକ୍ତର ଜଗନ୍ନାଥ ମହାପାତ୍ର

ଜନ୍ମସ୍ଥାନ : ଖଣ୍ଡସାହୀ, କଟକ

ଶିକ୍ଷା : ଏମ୍.ଏ. (ଓଡ଼ିଆ), ବି.ଇଡ଼ି., ପିଏଚ୍.ଡ଼ି., ଡି.ଲିଟ୍.,
୧୯୭୭ରୁ ବିଭିନ୍ନ ସରକାରୀ ମହାବିଦ୍ୟାଳୟରେ ଅଧ୍ୟାପନା ।

ସଂପ୍ରତି : ପ୍ରାଧ୍ୟାପିକା, ଓଡ଼ିଆ ବିଭାଗ, ଉତ୍କଳ ବିଶ୍ୱବିଦ୍ୟାଳୟ, ଭୁବନେଶ୍ୱର ଏବଂ ୟୁ.ଜି.ସି.
ପ୍ରକଳ୍ପ ''ସ୍ୱାଧୀନତା ପରବର୍ତ୍ତୀ ହିନ୍ଦୀ ଓ ଓଡ଼ିଆ ନାଟକର ତୁଳନାତ୍ମକ ଅଧ୍ୟୟନ''
ବିଷୟରେ ମନୋନିବେଶ ।